# କିଛି ସୂତ୍ର — କାଂଚତ୍ ବ୍ୟାଖ୍ୟା

—ଶ୍ରୀ ମହାପାତ୍ର ନୀଳମଣି ସାହୁ



କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର

ପ୍ରକାଶକ
ଶ୍ରୀ ଅନନ୍ତ ମିଶ୍ର
କଟକ ଷ୍ଟୁଡ଼େଣ୍ଟସ୍ ଷ୍ଟୋର
ବାଲୁବଜାର : କଟକ-୨

ପ୍ରଥମ ସଂସ୍କରଣ
ପ୍ରଥମାଷ୍ଟମୀ-୧୯୭୬

ପ୍ରଚ୍ଛଦପଟ
ଶ୍ରୀ ଲଲଟ ମୋହନ ପଟ୍ଟନାୟକ

ମୁଦ୍ରାକର
ପ୍ରସାଦ ପ୍ରେସ
କଟକ-୭୫୩୦୦୨

ମୂଲ୍ୟ—
ବନ୍ଧାଇ : ଆଠ ଟଙ୍କା ମାତ୍ର
ସାଦା ଛ' ଟଙ୍କା ମାତ୍ର

**Kichhi Sutra—Kinchit Byakshya**

*by*

Mohapatra Nilamani Sahoo

Publisher
**Sri Anant Misra**
Cuttack Students' Store
Cuttack-2.

First Edition
November : 1976

Printer
Prasad Press
Cuttack-753002

Price
Delux : Rs. 8/-
Popular : Rs. 6/-

ଓଡ଼ିଆ ସାହିତ୍ୟରେ
ଆତ୍ମିକ କାବ୍ୟଚେତନାର ଆଧୁନିକ ପ୍ରବର୍ତ୍ତକ
ଗଭୀର ମାର୍ମିକ କବି ପରମ ପ୍ରୀତିଭାଜନ
**ଶ୍ରୀ ରମାକାନ୍ତ ରଥ** ସହୃଦୟେଷୁ...

ମହାପାତ୍ର ନୀଳମଣି ସାହୁ
ଭୁବନେଶ୍ୱର
ତା ୬ । ୧୧ । ୭୬



ଏହି ବହିଟିର କ୍ଷୁଦ୍ର ରଚନାଗୁଡ଼ିକ ୧୯୬୩ ମସିହାଠାରୁ ୧୯୭୬ ମସିହା ଭିତରେ ଲିଖିତ । ଏଥିରୁ ଅଧିକାଂଶ ମୁଁ "ଝଂକାର" ପତ୍ରିକା ସମ୍ପାଦନା କରୁଥିଲାବେଳେ ସମ୍ପାଦକୀୟ ହିସାବରେ ଲେଖିଥିଲି । ରଚନାଗୁଡ଼ିକରେ ତେଣୁ ସମ୍ପାଦକୀୟ ସଂକ୍ଷିପ୍ତତା ଓ ସେହି ସୂତ୍ରରେ କଂଚିତ ଗାମ୍ଭୀର୍ଯ୍ୟ ସେଗୁଡ଼ିକର ଶୈଳୀ ଓ ଆଙ୍ଗିକକୁ ନିୟନ୍ତ୍ରଣ କରିଅଛି । ମୋର ସାହିତ୍ୟିକ ଜୀବନରେ ଯତ୍‌କିଂଚିତ ଅନୁଜ୍ଞାନ ମୁଁ ଲାଭ କରିଛି ସେତେକ ମୋର ଭାଷାରେ ମୋର ଭାବରେ କିଛି ପରିମାଣରେ ବ୍ୟକ୍ତ କରିବାକୁ ପ୍ରୟାସ କରିଛି । ଯେଉଁ ପରିମାଣରେ ତତ୍ତ୍ୱ ଓ ସେଗୁଡ଼ିକର ବ୍ୟାଖ୍ୟାନ ହୋଇ ପାରିଥିଲେ ଏହି ରଚନା ଗୁଡ଼ିକ ହୁଏତ ସାହିତ୍ୟିକ ଚିନ୍ତାର ଐଶ୍ୱର୍ଯ୍ୟ ସଂଗ୍ରହ କରିପାରି ଥାଆନ୍ତା—ତାହା ସମ୍ଭବ ହୋଇପାରି ନାହିଁ । ମୁଖ୍ୟତଃ ଏଗୁଡ଼ିକୁ ଟିପ୍ପଣୀ ଆଖ୍ୟା ଦିଆଯାଇ ପାରେ । ଅନୁରାଗୀ ପାଠକ ପାଠିକାଙ୍କ ଚିତ୍ତରେ କେତେକ ଅନୁଭବ ସିଦ୍ଧ ଚିନ୍ତାର ଏହି ଲେଖା ଗୁଡ଼ିକ ସଞ୍ଚରିତ କରିଦେଇ ପାରିଲେ ମୁଁ କୃତାର୍ଥ ହେବି ।

ମୁଁ ଜାଣେ, ମୋର ଏହି ବହିଟି ପ୍ରକାଶ ପାଇବା ପରେ ଦୁଇଜଣ ବନ୍ଧୁ ସବୁଠାରୁ ବେଶୀ ଖୁସୀ ହେବେ । ସେ ହେଉଛନ୍ତି ଓଡ଼ିଶାର ପ୍ରଖ୍ୟାତ ଇଂରାଜୀ ଅଧ୍ୟାପକ ଓ ସମାଲୋଚକ ଶ୍ରୀଯୁକ୍ତ ଯତୀନ୍ଦ୍ର ମୋହନ ମହାନ୍ତି ଓ ପ୍ରଖ୍ୟାତ କଥାକାର, ରାଜନୀତି ବିଜ୍ଞାନ ଅଧ୍ୟାପକ ଶ୍ରୀଯୁକ୍ତ ହରିହର ଦାସ । ମୁଁ ସେ ଦୁହିଁଙ୍କୁ ଏଥି ସଙ୍ଗେ ସ୍ମରଣ କରି କୃତଜ୍ଞ ମନେ କରୁଛି । କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର୍ ପ୍ରକାଶନୀ ସଂସ୍ଥାର ଅନ୍ୟତମ କର୍ତ୍ତା ଅନୁଜ ପ୍ରତିମ ଶ୍ରୀମାନ୍ ନୃସିଂହ ପ୍ରସାଦ ମିଶ୍ର ଏ ବହିଟି ପ୍ରକାଶ ଲାଗି ବହୁତ ଆଗ୍ରହ ଦେଖାଇଛନ୍ତି । ତାଙ୍କୁ ଧନ୍ୟବାଦ ଜଣାଉଛି ।

ମୋର ପାଠକ ପାଠିକାମାନଙ୍କର ଶୁଭ ହେଉ । । ଇତି ।

**ମହାପାତ୍ର ନୀଳମଣି ସାହୁ**
ସମ୍ପାଦକ, ସ୍ୱରାଷ୍ଟ୍ର (ଲୋକସମ୍ପର୍କ) ବିଭାଗ

ଭୁବନେଶ୍ୱର
କାର୍ତ୍ତିକ ପୂର୍ଣ୍ଣିମା
ତା ୭ । ୧୧ । ୧୯୭୬

# ସୂଚୀ

# ଶିଳ୍ପୀର ବ୍ୟକ୍ତିତ୍ୱ

## ଶିଳ୍ପୀର ସ୍ୱଭାବ :

ଶିଳ୍ପୀ ମଣିଷ ସତ୍ୟ, ମାତ୍ର ମନୁଷ୍ୟର ସୀମା ଭିତରେ ସେ ଆବଦ୍ଧ ରହିପାରେ ନାହିଁ । ମନୁଷ୍ୟର ବ୍ୟାବହାରିକ ଚେତନାର ଯଥେଷ୍ଟ ଊର୍ଦ୍ଧ୍ୱରେ ପ୍ରତିଷ୍ଠିତ ତା'ର ଯଥାର୍ଥ ଶିଳ୍ପ-ଚେତନା । ଶିଳ୍ପୀର ନିଜ ଜୀବନ ହିଁ ତା'ର ଶିଳ୍ପ ଲାଗି ମୌଳିକ ଉପାଦାନ—କଞ୍ଚାମାଲ୍ । ତା'ର ନିଜର "ଜୀବନ-ଚର୍ଯ୍ୟା"ରୁ ଆରମ୍ଭ ହୁଏ ତା'ର "ଜୀବନବୋଧ" ଏବଂ ସେହି ଆତ୍ମ-ଲବ୍ଧ ଜୀବନବୋଧର ସଙ୍ଗତ ଓ ସୌଷ୍ଠବପୂର୍ଣ୍ଣ ପ୍ରକାଶ ହିଁ ତା'ର "ଜୀବନ-ବେଦ" ।

ମାତ୍ର ଶିଳ୍ପୀ କେବଳ ଶିଳ୍ପୀ ହେଲେ—"ମହତ୍ ଶିଳ୍ପ"ର ସ୍ରଷ୍ଟା ହୋଇ ପାରେନା । ସେଥିଲାଗି ଶିଳ୍ପୀକୁ ମୁକ୍ତ ହେବାର ସାଧନା କରିବାକୁ ପଡ଼ିବ । କାରଣ ସେ ନିଜେ ତତ୍ତ୍ୱଦର୍ଶୀ ନ ହେଲେ ଅନ୍ୟକୁ ତତ୍ତ୍ୱ ଦର୍ଶାଇ ପାରିବ ନାହିଁ । ତେଣୁ ଶିଳ୍ପୀ କେବଳ ରସିକ ନୁହଁ—କେବଳ ପ୍ରାଜ୍ଞ ନୁହଁ—ସେ ମଧ୍ୟ ଧ୍ୟାନୀ ହେବା ଉଚିତ । ମହତ୍ ଶିଳ୍ପ କେବଳ ରସବୋଧରୁ ଜନ୍ମ ନିଏ ନାହିଁ । କେବଳ ପ୍ରଜ୍ଞାର ଆଲୋକରେ ପ୍ରକାଶିତ ହୁଏ ନାହିଁ—ଧ୍ୟାନଲବ୍ଧ ଚେତନାରେ ହିଁ ଏହା ସମ୍ଭବ ହୁଏ ଓ ବିକଶିତ ହୁଏ । କିନ୍ତୁ ଶିଳ୍ପୀ ଯେ ସର୍ବଦା କେବଳ ଧ୍ୟାନୀ ହୋଇ ରହିବ—ତା ମଧ୍ୟ ନୁହେଁ । କେବଳ ମୁକ୍ତ ହୋଇ ରହିବ—ତା ମଧ୍ୟ ନୁହେଁ । କେବଳ ଧ୍ୟାନୀ ଆଉ ମୁକ୍ତ ହେଲେ ସେ ନିସ୍ତବ୍ଧ ହୋଇଯାନ୍ତା ଏବଂ ଏହି ନିସ୍ତବ୍ଧତା ହିଁ ତାକୁ ନିର୍ବାଣ ଆଡ଼କୁ ମୁହାଁଇ ନିଅନ୍ତା । ମାତ୍ର ଯଥାର୍ଥ ଶିଳ୍ପୀ ନିର୍ବାଣ କାମନା କରେ ନାହିଁ । ସେ ପ୍ରଶ୍ନ କରେ—ସ୍ୱୟଂ ସ୍ରଷ୍ଟା ନିଜର ନିର୍ବାଣ ଲାଗି ଚେଷ୍ଟା କରୁ ନାହାନ୍ତି କାହିଁକି ? କାହିଁକି ତେବେ ନିଜକୁ ବହୁ ଭାବେ ବ୍ୟକ୍ତ କରିବା ଲାଗି ସ୍ୱୟଂ ସ୍ରଷ୍ଟାର ମଧ୍ୟ ଏଇ ନିତ୍ୟ ପ୍ରୟାସ ? ସ୍ରଷ୍ଟା ଯେ ସ୍ୱୟଂ ପରମ ଶିଳ୍ପୀ ! ଏହି ବ୍ୟାପ୍ତ ଚରାଚର

ଜଗତ ହିଁ ତାର ଶିଳ୍ପ । ଆଉ ଏହି ସୃଷ୍ଟି ଭିତରେ ହିଁ ତ ନିତ୍ୟ ସେ ନିଜର ଶିଳ୍ପୀ ଆତ୍ମାକୁ ପ୍ରକାଶ କରୁଛି । ସ୍ରଷ୍ଟା ତ ନିଜେ ପ୍ରତିବଦ୍ଧ ହେଉନାହିଁ—ନିର୍ବାପିତ ହେଉ ନାହିଁ । ଶିଳ୍ପୀ ମଧ୍ୟ ସେଥିଲାଗି ମୋକ୍ଷ ବା ନିର୍ବାଣ ଚାହେଁନା । ମାତ୍ର ଏହା ବୋଲି ସେ ବନ୍ଧନ ମଧ୍ୟ ଚାହେଁନା—କୋଳାହଳ ଚାହେଁନା । ବନ୍ଧନ ବା ମୁକ୍ତି—ପ୍ରତିବଦ୍ଧତା ବା କୋଳାହଳ—ଏଇ ଉଭୟର ସୀମାକୁ ସ୍ପର୍ଶ କରି ଦୃଢ଼ ଭାବରେ ଠିଆ ହୁଏ—ତା'ର ଶିଳ୍ପୀ ସତ୍ତା ।

ଶିଳ୍ପୀ ପୁଣି ଅସ୍ଥିର । ନିତ୍ୟ ବେଦନାଜର୍ଜର ତା'ର ହୃଦୟ । ତା'ର ନିତ୍ୟ ଜିଜ୍ଞାସା—ଆଉ ନିତ୍ୟ ସମାଧାନ । ତା'ର ଚେତନାରେ ସେ ସବୁର ସୀମା ଭାଙ୍ଗି ଅସୀମରେ ମିଶାଇ ଦିଏ । ପୁଣି ଅସୀମକୁ ବାନ୍ଧି ରଖେ ତା'ର ଶିଳ୍ପର ସୀମା ଭିତରେ ।

ନିତ୍ୟ ଏକ ପ୍ରବଳ ଦ୍ୱନ୍ଦ୍ୱର ଆଲୋଡ଼ନ ତା'ର ମନ, ପ୍ରାଣ ଓ ଆତ୍ମାକୁ ସତେଜ, ସକ୍ରିୟ ଓ ବିକାଶଶୀଳ କରି ରଖେ । ଏହି ଆନ୍ଦୋଳନ ଯେତେବେଳେ ମରିଯାଏ—ଶାନ୍ତ ହୋଇଯାଏ—ସେତେବେଳେ ଶିଳ୍ପୀର ଶିଳ୍ପ ସତ୍ତା ମଧ୍ୟ ଲୋପ ପାଇଯାଏ । ଏହି ନିତ୍ୟ ଦ୍ୱନ୍ଦ୍ୱବୋଧଜନିତ ଆଲୋଡ଼ନର ବେଦନା ଲାଗି ସେ ବେଳେବେଳେ ସମସ୍ତ ସ୍ୱୀକୃତ ବିଧି ନିଷେଧର ସୀମା ଡେଇଁ ପାପ (?)ର ସୀମାକୁ ମଧ୍ୟ ସ୍ପର୍ଶ କରିଦେଇ ଆସିପାରେ । ଅବଶ୍ୟ ଏହା ସବୁବେଳେ ସେ ସଚେତନ ଭାବେ କରେନାହିଁ । ନିତ୍ୟ ଦ୍ୱନ୍ଦ୍ୱବୋଧର ବେଦନାରେ ପରିପୁଷ୍ଟ ହେବାକୁ ଚାହୁଁଥିବା ତା'ର ଶିଳ୍ପୀସତ୍ତା ତାକୁ କେବେ ଜ୍ଞାତ ବା ଅଜ୍ଞାତ ଭାବେ ଏଥିଲାଗି ପ୍ରମତ୍ତ କରାଏ—ପ୍ରରୋଚନା ଦିଏ । ଏ ସ୍ଥଳେ ସେ ପାପକୁ ତା'ର ଆଲିଙ୍ଗନର ସ୍ୱାଦ ଦିଏ । ମାତ୍ର ନିଜେ ପାପକୁ ଆଲିଙ୍ଗନ କରେନାହିଁ । ପାପ ପ୍ରତି ତା'ର ହୃଦୟ ସର୍ବଦା କରୁଣା କୋମଳ ।

ପୁଣି ପାପ କର୍ତ୍ତା ସୟତାନ୍ ପ୍ରତି ମଧ୍ୟ ଶିଳ୍ପୀ ସମ୍ବେଦନଶୀଳ । ସେ ଜାଣେ—ସୟତାନ ଆଉ କେହି ନୁହେଁ—ଭଗବାନଙ୍କର ଛାଇ ହେଉଛି ସୟତାନ । ଯଦି କିଏ କହେ—ଆଲୋକମୟ ଭଗବାନଙ୍କର ଛାଇ କୋଉଠୁ ଆସିବ ? ତେବେ ଏମିତି ମଧ୍ୟ କୁହାଯାଇପାରେ ଯେ ସୟତାନ ବୋଧେ ଭଗବାନଙ୍କର ସ୍ରଷ୍ଟା । ଯେମିତି ଅନ୍ଧାରରେ କ୍ରମବିକାଶ ବା ପରିଣତି ବୋଧହୁଏ ଆଲୋକ । ଅଜ୍ଞାନର କ୍ରମ ପରିଣତି ଜ୍ଞାନ । ଜଡ଼ର ପରିଣତି ଚେତନାରେ—ଆଉ ଅବ୍ୟକ୍ତରୁହିଁ ବ୍ୟକ୍ତର ସମ୍ଭବ । କିମ୍ବା ସୟତାନ ହେଉଛି ଭଗବାନଙ୍କର ସୃଷ୍ଟି । ସୟତାନକୁ ସୃଷ୍ଟି କରି ନିତ୍ୟ ତା' ସଙ୍ଗେ ଦ୍ୱନ୍ଦ୍ୱ ଲଗାଇ ତା' ପାଖେ ପରାଜିତ ହୋଇ—ପୁନଶ୍ଚ ତାକୁ

ପରସ୍ତ କରି ଭଗବାନ୍ ଏହି ଦ୍ୱନ୍ଦ୍ୱମୟ ସୃଷ୍ଟିଲୀଳାର ବେଦନାମୟ ମାଧୁର୍ଯ୍ୟକୁ ଭୋଗ କରୁଅଛନ୍ତି । ଶିଳ୍ପୀର କାମ ମଧ୍ୟ ସେଇଆ । ଦ୍ୱନ୍ଦ୍ୱ ନ ଥିଲେ ବି ସେ ନିଜ ଭିତରୁ ସମ୍ଭାବନ ସୃଷ୍ଟି କରି ତା' ସଙ୍ଗେ ନିତ୍ୟ ଯୁଦ୍ଧ କରି ନିଜେ ଆହତ ହୋଇ ଓ ତାକୁ ଆହତ କରି ଜୀବନର ଏହି ବେଦନା ମାଧୁର୍ଯ୍ୟ ମିଶା ରସଲୀଳାକୁ ନିଜେ ଭୋଗେ ଓ ଅପରକୁ ତା'ର ଶିଳ୍ପ ମାଧ୍ୟମରେ ବୋଧ କରାଏ ।

ପଶୁ ପାଖରେ ସେ ମଥା ନୁଆଁଏ ନାହିଁ । ମାତ୍ର ପଶୁ ପ୍ରତି ମଧ୍ୟ ସେ ହିଂସ୍ର ନୁହେଁ—ନିଷ୍ଠୁର ନୁହେଁ । ପଶୁକୁ ସେ ପିଟିପିଟି ମାରେ ନାହିଁ । ସେ ଜାଣେ—ଦେବତାର ଅମୃତ ଭୋଜାସଭାରେ—ପଶୁ କେବଳ ଗୋଟିଏ କ୍ଷୁଧିତ ପ୍ରାଣର ଉତ୍ତପ୍ତ କାକୁତି । ତାକୁ ସେ ଦୟା କରେ । ତା'ର ଲୋଭାତୁର ତୃଷ୍ଣାକାତର ଆଳ ଭିତରକୁ ସେ ଟିକିଏ ଉଚ୍ଛିଷ୍ଟ ପକାଇ ଦିଏ ।

ପାକଶାଳାରେ ବିଶ୍ୱଦେବତାଙ୍କୁ ଅମୃତ ଭୋଗ ଦେଇ ବାଡ଼ିପଟେ ପଥର ଉପରେ ସେ ଗଣ୍ଡିଏ ଥୋଇ ଆସେ—ଅମୃତର ଅଭ୍ୟାଗତ । ସେତିକ ମଧ୍ୟ ପଶୁର ପ୍ରାପ୍ୟ—ସମ୍ଭାବନର ପ୍ରାପ୍ୟ । ଶିଳ୍ପୀ ଜାଣେ—ପଶୁର ଭାଗ ପଶୁକୁ ନ ଦେଲେ—ସେ ଅଧିକ କ୍ଷୁଧା ଜର୍ଜର ହୋଇ ବିଦ୍ରୋହ କରିବ । ଯଜ୍ଞପୀଠକୁ ଅଶୁଚି କରିବ, ଆଉ ଧ୍ୟାନରେ ବାରମ୍ବାର ବିଘ୍ନ ଘଟାଇବ ।

## ଶିଳ୍ପୀର ଧର୍ମ :

ଶିଳ୍ପୀର ପ୍ରକୃତି ନିଶ୍ଚୟ ଦେବତାର । ତା'ର ବ୍ୟକ୍ତିତ୍ୱ ନିଶ୍ଚୟ ଦୈବୀ । ସେ ଅମୃତଭୋଜୀ—ଅମୃତ ବିଳାସୀ । ମାତ୍ର ଅମୃତ ପ୍ରତି ମଧ୍ୟ ସେ ଅସହାୟ ଭାବରେ ଲୋଭାତୁର ନୁହେଁ । କାରଣ ସେ ଜାଣେ—ଅମୃତ ତା'ର ଖାଦ୍ୟ—ସେ ଅମୃତର ଖାଦ୍ୟ ନୁହେଁ ।

ଅମୃତ ଭୋଜୀ ହେଲେ ମଧ୍ୟ ସେ ବିଷକୁ ଡରେ ନାହିଁ—ଘୃଣାବୋଧ କରେ ନାହିଁ । କାରଣ ତା'ର ଦୈବୀ ବ୍ୟକ୍ତିତ୍ୱ ଅମୃତ ଓ ବିଷ ଉଭୟଙ୍କୁ ମଧ୍ୟ ଜୀର୍ଣ୍ଣ କରିଦେଇ ପାରେ । ସେ ଅସୁର ନୁହେ ଯେ, ବିଷର ଜ୍ୱାଳାକୁ ଭୟ କରି ସେ କେବଳ ଅମୃତର ଆଶାରେ ଚିରଦିନ ଜଳପୋଡ଼ି ମରିବ ।

ଶିବଙ୍କ ଭଳି ସବୁ ସୀମାକୁ ସେ ଧ୍ୱଂସକରେ । ବିଷ୍ଣୁଙ୍କ ପରି ସମସ୍ତ ଭଗ୍ନାଂଶକୁ ନେଇ ଅବ୍ୟକ୍ତ ବ୍ୟାପ୍ତ ଚରାଚରକୁ ପୁଣି ସୃଷ୍ଟିର ସୀମା ଭିତରେ ଧରି ପ୍ରକାଶ କରିଦିଏ । ଆଉ ଶେଷରେ ଏହି ଧ୍ୱଂସ ଓ ସୃଷ୍ଟିର ଅଶେଷ ଦ୍ୱନ୍ଦ୍ୱ ସଂଘର୍ଷରେ ପୂର୍ଣ୍ଣ

ମହାଆଲୋଡ଼ନମସ୍ତ ବେଦନା ମଧୁର ଜୀବନବେଦକୁ ବ୍ରହ୍ମାଙ୍କ ସଦ୍ଗୁଣ ଗୃହ ମୁଖରେ ଗାନ କରି ଉଠେ । ସେଇ ଗାନଭିତରେଇ ବାଜିଉଠେ—ସତ୍ୟ-ଶିବ-ସୁନ୍ଦରର-ମହିମା ସଙ୍ଗୀତ । ଶିଳ୍ପୀ ତେଣୁ ଏକାଧାରରେ ଶୈବ, ବୈଷ୍ଣବ ଓ ବ୍ରାହ୍ମ ।

## ସମାଜ ଓ ଶିଳ୍ପୀ :

ଆଚ୍ଛା—ଶିଳ୍ପୀ ନିଃସଙ୍ଗ କି ? ହଁ—ଚିରଦିନ ସେ ନିଃସଙ୍ଗ । ସମ୍ପୂର୍ଣ୍ଣ ଏକାକୀ । ଚତୁର୍ଦ୍ଦିଗରେ ଜାଲ ମେଲଇ—ସେଇ ଜାଲର ବନ୍ଧନ ଭିତରେ ସେ ଚିରଦିନ ଏକ ନିଃସଙ୍ଗ ଅପେକ୍ଷମାଣ ଅହିଂସ୍ର ଲୁତ୍ରି ପ୍ରାଣୀ । ସେ ଅପେକ୍ଷମାନ—ମାତ୍ର ଲକ୍ଷ୍ୟ ପ୍ରାପ୍ତି ଲଗି ସେ ଏତେ ବ୍ୟାକୁଳ ନୁହେଁ । ଲକ୍ଷ୍ୟରୁ ବିଚ୍ୟୁତ ହେଲେ ବି ସେ ଏତେ କାତର ନୁହେଁ ।

ଏକ ନିସ୍ତବ୍ଧ ନୀରବତା ମଧ୍ୟରେ ସେ ପୁଣି ବୃଥା ବାବଦୂକ । ତା'ର କୋଳାହଳ ସଙ୍ଗେ ଜଗତ ସୁର୍ ମିଳାଇ ପାରେନା । ତା'ର ମୂକତା ସଙ୍ଗେ ମଧ୍ୟ ଜଗତ ଛନ୍ଦ ରଖିପାରେ ନାହିଁ । ସେ ଅନ୍ୟର କାନ୍ଧ ଉପରେ ହାତ ପକାଏ—ମାତ୍ର ଭରାଦିଏ ନାହିଁ । ଅନ୍ୟ ହାତ ପକାଇବା ଲଗି କାନ୍ଧ ପତାଏ—ମାତ୍ର ଭର୍ ନିଏ ନାହିଁ ।

ମାତ୍ର ସ୍ୱା ବୋଲି ଶିଳ୍ପୀ ଦାୟିତ୍ୱହୀନ ନୁହେଁ । ଆବଶ୍ୟକ ହେଲେ ସମାଜର କଲ୍ୟାଣଲଗି ଶିଳ୍ପୀ ନିଜକୁ ଉତ୍ସର୍ଗ କରିଦେଇପାରେ । ମାତ୍ର ସମାଜର ସମସ୍ତ ଦାବୀକୁ ସ୍ୱୀକାର କରିବାପାଇଁ ଶିଳ୍ପୀ ବାଧ୍ୟ ନୁହେଁ । ତେବେ ମୁଖ୍ୟତଃ ଶିଳ୍ପୀ ହେଉଛି ସମାଜର କ୍ରିୟା ପ୍ରତିକ୍ରିୟାର ନିରପେକ୍ଷ ଦର୍ଶକ ଓ ସ୍ରଷ୍ଟା । ସେ ସମାଜ ଓ ରାଷ୍ଟ୍ର ପ୍ରତି ମାନବିକ ଚେତନାରେ ଅନୁଗତ । ମାତ୍ର ସମାଜ ଓ ରାଷ୍ଟ୍ରଗତ କୌଣସି ଆତ୍ମସମ୍ମାନ ହାନିକର ବନ୍ଧନକୁ ସେ ସ୍ୱୀକାର କରି ନ ପାରେ । ବ୍ୟକ୍ତିଠାରୁ ସେ ସମାଜକୁ ବା ରାଷ୍ଟ୍ରକୁ ବଡ଼ ମନେ କରିପାରେ ନାହିଁ । ଅଥଚ ସମାଜ ବା ରାଷ୍ଟ୍ରର କୌଣସି ପ୍ରକାର ମୌଳିକ ମର୍ଯ୍ୟାଦା କ୍ଷୁନ୍ନ ହେଲେ ସେ ଅନ୍ୟମାନଙ୍କ ଅପେକ୍ଷା କମ୍ ଦୁଃଖିତ ନୁହେଁ କି କମ୍ ସକ୍ରିୟ ନୁହେଁ ।

## ନାରୀ ଓ ଧର୍ମ :

ଭକ୍ତ ପକ୍ଷରେ ଫୁଲ ଯାହା—ଶିଳ୍ପୀ ପକ୍ଷେ ନାରୀ ସେଇଆ । ଭକ୍ତ ନିକଟରେ ଫୁଲର ନିଜସ୍ୱ ବ୍ୟବହାର ନିଜ ଲଗି କିଛି ନାହିଁ । ସେ ତା'ର କଳ୍ପିତ ଦେବତା ଉପରେ ଫୁଲତକ ଥୋଇଦିଏ, କାରଣ ତା'ର ସମସ୍ତ ଇନ୍ଦ୍ରିୟର କାମନା ବାସନା

ସଙ୍ଗେ ତାର ମାନସ ଲୋକର ସମସ୍ତ ଆଦର୍ଶ ଦେଇ ନିଜ ଆତ୍ମାର ସମସ୍ତ ଅଭିଳାଷ ଓ ନିବେଦନର ମହିମାରେ ସେ ଯେଉଁ କଳ୍ପଲୋକର ଦେବତାକୁ ଉପାସନା କରେ —ତା'ରି ଉପରେ ଫୁଲର ସମସ୍ତ ଜଞ୍ଜାଳକୁ ନୈବେଦ୍ୟ ଦେଇ ସେ ଫୁଲକୁ ଉପଭୋଗ କରେ । ଭକ୍ତର ଭୋଗ ତା'ର ଉପଲବ୍ଧିରେ ।

ଦୁନିଆର ଅନ୍ୟମାନେ ନାରୀର ବାସ୍ତବ ବ୍ୟବହାର ଜାଣନ୍ତି । ନାରୀର ବାସ୍ତବ ଉପଭୋଗ ସେମାନଙ୍କର କାମ୍ୟ । ସଂସାରୀ ବ୍ୟକ୍ତି ନାରୀକୁ ଭୋଗକରେ । ମାତ୍ର ଯଥାର୍ଥ ଶିଳ୍ପୀ ଭୋଗକରେ ନାରୀର ନାରୀତ୍ୱକୁ । ନାରୀଠାରୁ ପ୍ରେମ ପାଇଲେ ଶିଳ୍ପୀ ଖୁସି ହୁଏ । ମାତ୍ର ସେ ପ୍ରେମଲାଗି ଯେ କୌଣସି ନିର୍ଦ୍ଦିଷ୍ଟ ନାରୀ ବିଶେଷର ଅପେକ୍ଷା କରିବ ଏହା ଅସମ୍ଭବ । ଶିଳ୍ପୀ ଜାଣେ ପ୍ରେମଲାଗି ସେ କାହାର ଦାନକୁ ଅନାଇ ବସିଲେ ଚଳିବ ନାହିଁ । ସେ ଯେତେ ଚାହେଁ ଓ ଯାହା ବା ଚାହେଁ ତାକୁ ସେତିକି ଆଉ ସେଇଆ କିଏ ବା ଦେଇ ପାରିବ ? ଅବଶ୍ୟ ଏଥିଲାଗି ମଧ୍ୟ ତାର ଅନୁଶୋଚନା ନାହିଁ । ସବୁଦାବୀ ତା'ର ନିଜ ପାଖରେ । ଆଉ ଏକଥା ବି ଠିକ୍ ନିଜ ପାଖରୁ ସେ କେବେ ନିରାଶ ହୁଏନାହିଁ । ଅବଶ୍ୟ ପ୍ରାୟ ପ୍ରତ୍ୟେକ ଶିଳ୍ପୀ ନାରୀକୁଇ ବିବାହ କରନ୍ତି, ମାତ୍ର ନାରୀଲାଗି ବିବାହ କରନ୍ତି ନାହିଁ । ବିବାହଲାଗି ନାରୀଟିଏ ଲୋଡ଼ନ୍ତି ।

ତଥାପି ଏହା ନିଃସନ୍ଦେହ ଯେ ନାରୀ ଶିଳ୍ପୀକୁ ପ୍ରେମକରେ, ମାତ୍ର ତାହାକୁ ବିବାହର ପ୍ରଶ୍ନ ଉଠିଲେ ପ୍ରତ୍ୟେକ ନାରୀ ଦ୍ୱିତୀୟବାର ଚିନ୍ତା କରିବାକୁ ସମୟ ନିଏ । ସୁନ୍ଦରୀ ଓ ପ୍ରେମଶୀଳା ମାନେ ଏକଥା ନିଧାର୍ଯ୍ୟ ଜାଣନ୍ତି ଯେ ତାକୁ ନିର୍ଣ୍ଣିନ୍ତରେ ଓ ସହଜରେ ଉପଭୋଗ କରିହେବ ମାତ୍ର ତା'କୁ ବିବାହ କଲେ ତାହାର ଦାୟ ସହିବା ସ୍ୱୟଂ ଧରିତ୍ରୀ ପକ୍ଷରେ ବି କାଠିକର ପାଠ । ତା ଛଡ଼ା ଅଧିକାଂଶ ସୁନ୍ଦରୀ, ପ୍ରେମ-ଶୀଳାମାନେ ଜାଣନ୍ତି ଶିଳ୍ପୀର ପ୍ରେମିକା ହେଲବେଳେ ଯେଉଁ ଯୋଗ୍ୟତାର ସେମାନେ ଅଧିକାରିଣୀ ହୋଇ ପାରନ୍ତି, ଯେଉଁ ଖ୍ୟାତି ଓ ପ୍ରଶଂସାପୁଞ୍ଜି ସେମାନେ ଅର୍ଜନ କରିବାକୁ ସକ୍ଷମ ହୋଇ ପାରନ୍ତି, ତାର ପତ୍ନୀ ହୋଇଯିବା ମାତ୍ରେଇ ସେସବୁ ଅସହାୟ ଭାବେ ହରାଇବାକୁ ପଡ଼େ । କାରଣ ସମାଜର ପ୍ରାୟ ପ୍ରତ୍ୟେକ ଶ୍ରେଣୀର ଶିଳ୍ପ-ରସିକଙ୍କ ଧାରଣା ଯେ ପ୍ରେମ-କବିତା ଯେଉଁ କବି ଲେଖେ ସେ କଦାପି ତା'ର ପତ୍ନୀକୁ ନେଇ ଲେଖେ ନାହିଁ । ତାହାର ମାନସୀ ଆଉ ଜଣେ । ସେହି ମାନସୀ ହେବାର ସୁଯୋଗ ପାଇବାକୁ ତେଣୁ ଅଧିକାଂଶ ସୁନ୍ଦରୀ ପ୍ରେମଶୀଳାଙ୍କର ଆଗ୍ରହ । ମାତ୍ର ହାୟ ! କବିର ମାନସୀ ହେବାଲାଗି ବ୍ୟାକୁଳମନା ପ୍ରେମବତୀମାନେ ଯଦି ଜାଣିପାରୁ ଥାଆନ୍ତେ କବି ମାନସର ଭୌଗୋଳିକ ବସ୍ତୁଠାରୁ ଭୌଗୋଳିକ ବିପର୍ଯ୍ୟୟ ପର୍ଯ୍ୟନ୍ତ ସମସ୍ତ କ୍ରିୟା-ପ୍ରତିକ୍ରିୟାର ତଥ୍ୟ ବା ତତ୍ତ୍ୱ, କେଡ଼େ ନିଦାରୁଣ, କେଡ଼େ ନିର୍ବୋଧ ଆଉ କେଡ଼େ ବିରକ୍ତିକର !

ତଥାପି ଶିଳ୍ପୀମାନେ ବିବାହ କରନ୍ତି ଓ ତନ୍ମଧ୍ୟରୁ ଖୁବ୍ ଅଳ୍ପ କେତେକ ପୁତ୍ରପୌତ୍ର ଦେଖନ୍ତି ବା ପୁତ୍ରପୌତ୍ର ପାଆନ୍ତି । ମାତ୍ର ସେ କ୍ଷେତ୍ରରେ ଶିଳ୍ପର ଦୁହାଇ ଉଠାଇବା ମିଥ୍ୟା । ସେ ସବୁ ବ୍ୟାପାରରେ କେବଳ ସ୍ତ୍ରୀ ପୁରୁଷଙ୍କ ମୌଳିକ ଆଦିମ ସମସ୍ୟା ହିଁ ମୂଳକଥା ।

ଶିଳ୍ପୀର ପତ୍ନୀଟି ବିଶେଷ ଜାଣେ ଯେ ସେ ନାରୀ ହୋଇ ମଧ୍ୟ ଶିଳ୍ପୀର ସଂସାରରେ ସ୍ତ୍ରୀ ହୋଇ ରହିନାହିଁ । ତାକୁ ଜୀବନସାରା ସ୍ୱାମୀ ହେବାକୁ ପଡ଼ୁଛି । ଶିଳ୍ପୀର ସ୍ୱାମୀତ୍ୱ ଗ୍ରହଣକରି ମଧ୍ୟ ସେ ତା ଉପରେ ପ୍ରଭୁତ୍ୱ ବିସ୍ତାର କରି ପାରିନାହିଁ । ବରଂ ଶିଳ୍ପୀର ଜୀବନରେ ସେ ଏକ କ୍ଷମତାହୀନ ଅଧୀଶ୍ୱରୀ କେବଳ ।

ତେବେ ଏହିଭଳି ପତ୍ନୀଟିକୁ ମୃତ୍ୟୁ ପରେ ଶିଳ୍ପୀ ତା' ସାଙ୍ଗରେ ସ୍ୱର୍ଗକୁ ବା ନରକକୁ ନେଇ ଯିବାକୁ ଇଚ୍ଛାକରେ କାରଣ ସେ ଏକଥା ନିଧାର୍ଯ୍ୟ ଜାଣେ ଯେ ସ୍ୱର୍ଗହେଉ ବା ନରକ ହେଉ କୌଣସି ସ୍ଥାନରେ ତାହାର ଏହି ପତ୍ନୀଟି ବ୍ୟତୀତ ତାକୁ କେହି ନ ବୁଝି ମଧ୍ୟ ସମର୍ଥନ କରିବେ ନାହିଁ ।



# କଳା ଓ ଜୀବନ

ମନୁଷ୍ୟର ସୃଜନଶୀଳ ବୃତ୍ତିରୁ "କଳା" ଓ "ବିଜ୍ଞାନ" ଉଭୟେ ଜନ୍ମ। ଗୁହାମାନବ ପ୍ରଥମେ ଅଗ୍ନିକୁ ଦେଖି ଚମତ୍କୃତ ହୋଇଥିବେ—ଭୀତ ହୋଇଥିବେ ଓ ପ୍ରୀତ ବି ହୋଇଥିବେ । ଏଇ ଚମତ୍କୃତ, ଭୀତ ଓ ପ୍ରୀତ ବୋଧକୁ ରଙ୍ଗ,ରେଖା ସୁର, ଧ୍ୱନି ଓ ଶବ୍ଦାଦି ମାଧ୍ୟମରେ ପ୍ରକାଶ କରିବା ଲାଗି ବ୍ୟାକୁଳ ହୋଇଥିବେ। ନିଜର ଏହି ମନୋଭାବ ଓ ଅନୁଭୂତକୁ ଆପଣାର ଅହଂଗତ ପରିଧିରୁ ମୁକ୍ତ କରି ଆନ୍ୟମାନଙ୍କ ଭିତରେ ସଞ୍ଚରିତ କରିବାର ବାସନା ହେଉଛି "କଳାତ୍ମକ ବାସନା"। ବିଶ୍ୱସତ୍ତାଠାରୁ ବିଚ୍ଛିନ୍ନ ହୋଇ ଯେଉଁ କ୍ଷୁଦ୍ର ସୀମିତ ବ୍ୟକ୍ତି ସତ୍ତାଟି ବିଶେଷ ସ୍ଥାନ ଓ କାଳର ପରିସୀମାରେ ବିଭିନ୍ନ ପ୍ରୟୋଗାପ୍ରୟୋଗରେ ବିଶେଷ ଅଭିଜ୍ଞତା ଅନୁଭୂତ ଓ ଅବବୋଧ ଲାଭକରେ—ତାହାକୁ ପୁଣି ବିଶ୍ୱଚରାଚରରେ ପରିବ୍ୟାପ୍ତ ଚୈତନ୍ୟ ସଙ୍ଗେ ମିଶାଇଦେଇ ନିଜେ ଏକ ମିଳନାତ୍ମକ ଆନନ୍ଦ ଉପଭୋଗ କରିବା ଲାଗି ବ୍ୟକ୍ତି ସତ୍ତା ଯେଉଁ ପ୍ରୟୋଜନାତ୍ମକ ଆନନ୍ଦମୟ ପ୍ରଚେଷ୍ଟା କରେ—ତାହାହିଁ କଳାଗତ ପ୍ରଚେଷ୍ଟା ।

ଅପର ପକ୍ଷରେ—ଗୁହା ମାନବ ଅଗ୍ନିକୁ ଦେଖି—ତାର ସ୍ୱରୂପ, ସ୍ୱଗୁଣ ଓ ବ୍ୟବହାର ସମ୍ବନ୍ଧେ ଜାଣିବାକୁ ଯେଉଁ ନୈଷ୍ଠିକ ଆଗ୍ରହ ଦେଖାଏ—ତାହା ବିଜ୍ଞାନଗତ ଆଗ୍ରହ। ସେହି ଏକନିଷ୍ଠ ଆଗ୍ରହକୁ କାର୍ଯ୍ୟକାରୀ କରି—ତତ୍‌ପ୍ରସୂତ ଫଳାଫଳକୁ ବିଶ୍ୱମାନବର ଜ୍ଞାନ ଓ ବ୍ୟବହାର ଲାଗି ସେ ନିବେଦନ କରି ଦେଇ—ଅନୁରୂପ ଏକ ମିଳନାତ୍ମକ ଆନନ୍ଦ ଉପଭୋଗ କରେ ।

ମୋଟ ଉପରେ—ମନୁଷ୍ୟର ଦୁଇଟି ସ୍ୱତନ୍ତ୍ର ପ୍ରବୃତ୍ତି ( ଏ ପ୍ରବୃତ୍ତି ପୂର୍ଣ୍ଣତଃ ମାନବୀୟ ) କଳା ଓ ବିଜ୍ଞାନ ତାର ଆତ୍ମା ସଂସର୍ଗୀ। ଏହି ଦୁଇଟି ପ୍ରବୃତ୍ତି ମାଧ୍ୟମରେ ଓ ତାର ଯଥାଯଥ ବିକାଶରେ ସେ କ୍ରମବିକଶିତ ହେଉଛି—ପୁଣି ମଧ୍ୟ ବିଶ୍ୱଚେତନା ସଙ୍ଗେ ମିଳିତ ହୋଇ ଏକ ରହସ୍ୟ ଆନନ୍ଦ ଲାଭ କରୁଛି ।

ତେବେ ପ୍ରବୃତ୍ତି ଓ ଲକ୍ଷ୍ୟ ଏକ ହେଲେ ମଧ୍ୟ ବୃତ୍ତିରେ କଳା ଅଧିକ ଅନୁଭବାତ୍ମକ ଓ ବିଜ୍ଞାନ ପ୍ରୟୋଗାତ୍ମକ—କଳା ସଂଶ୍ଳେଷଣାତ୍ମକ ଓ ବିଜ୍ଞାନ ବିଶ୍ଳେଷଣାତ୍ମକ—କଳା "ପରୋକ୍ଷାର୍ଥସ୍ୟ ଦର୍ଶକମ୍ ଓ ବିଜ୍ଞାନ ପ୍ରତ୍ୟକ୍ଷାର୍ଥସ୍ୟ ଦର୍ଶକମ୍— ଉଭୟେ କିନ୍ତୁ "ଅନେକ ସଂଶୟେ ଚ୍ଛେଦ" ଓ ଉଭୟେ ସତ୍ୟ-ଶିବ-ସୁନ୍ଦରର ଉପାସନା କରନ୍ତି ।

ଶେଷକଥା—ମଣିଷର ଜୀବନ ସଙ୍ଗେ ଉଭୟେ ଘନିଷ୍ଠ ଭାବେ ଜଡ଼ିତ । ଜୀବନର ବିକାଶ ଲାଗି ଉଭୟର ପ୍ରୟୋଜନ । ଉଭୟେ ମୂଳତଃ ସମାଜମୁଖୀ— ମାତ୍ର ଆତ୍ମ ପ୍ରକାଶରେ କଳାକାର ସ୍ୱତନ୍ତ୍ରବାଦୀ, ସ୍ୱେଚ୍ଛାଗ୍ରହୀ ଓ ଅନପେକ୍ଷ । ମାତ୍ର ବୈଜ୍ଞାନିକ ସମଷ୍ଟି-ନିର୍ଭର ଓ ସାପେକ୍ଷ ।

"କଳା"ର ସଂଜ୍ଞା ଓ ଉଦ୍ଦେଶ୍ୟ ସମ୍ବନ୍ଧେ "ନାନାମୁନୀନାଂ ମତଯୁକ୍ତଭିନ୍ନା" ! କିନ୍ତୁ ଗୋଟିଏ ବିଷୟରେ ପ୍ରାୟ ସମସ୍ତେ ଏକ ମତ ଯେ—

କଳା ମନୁଷ୍ୟର ରମ୍ୟ-ବୋଧ-ଗତ ଆତ୍ମୋପଲବ୍ଧିରୁ ଜାତ । ଏହା ସୌନ୍ଦର୍ଯ୍ୟାନୁଭୂତି । ଜୀବନ ରକ୍ଷଣ ପ୍ରବୃତ୍ତିକୁ ସ୍ପଷ୍ଟଭାବେ ସାହାଯ୍ୟ କରୁଥିବା ସ୍ଥୂଳ ସୌନ୍ଦର୍ଯ୍ୟାନୁଭୂତିରୁ କଳା ଜନ୍ମ ହୋଇନାହିଁ । ଜୀବନର ବିକାଶ ଲାଗି ଓ ବିସ୍ତାର ଲାଗି ନିୟୋଜିତ ସୂକ୍ଷ୍ମ ସୌନ୍ଦର୍ଯ୍ୟାନୁଭୂତିରୁ କଳାର ଜନ୍ମ । ସଂକ୍ଷେପରେ ନିସର୍ଗର ଭାବାଙ୍ଗସ୍ଫୁରଣ ବା ତାହାର ଭାବାଙ୍ଗମୟ ଅନୁକରଣ ପ୍ରବୃତ୍ତିରୁହିଁ କଳା ଜନ୍ମଲାଭ କରିଛି ।

ନିସର୍ଗ-ରମ୍ୟ-ବୋଧ-ପ୍ରବୃତ୍ତିରୁ କଳାର ଜନ୍ମ ସତ, ହେଲେ ତାର କୌଣସି ନିର୍ଦ୍ଦିଷ୍ଟ ସ୍ୱରୂପ ନାହିଁ । ସେ ବହୁରୂପୀ । କଳା କେବଳ ବସ୍ତୁ ନିରପେକ୍ଷ ନୁହେଁ—କି କେବଳ ଭାବ ବାଚକ ନୁହେଁ ।

କେତେକ ପଣ୍ଡିତ କଳାକୁ କେବଳ କଳା ଦୃଷ୍ଟିରୁ ଓ ଆଉ କେତେକ ବ୍ୟାବହାରିକ ଦୃଷ୍ଟିରୁ ବିଚାର କରିଛନ୍ତି । କ୍ଲିଟନ୍ ବ୍ରୁକ୍‌ଙ୍କ ମତରେ ଜୀବନର ଅନ୍ୟାନ୍ୟ ଅନୁଭୂତି ମଧ୍ୟରେ କଳାନୁଭୂତି ଅନ୍ୟତମ । ଅନ୍ୟାନ୍ୟ ଅନୁଭୂତି ଗୁଡ଼ିକ ଭଳି କଳାନୁଭୂତିକୁ ଆବଶ୍ୟକତା ଦୃଷ୍ଟିରୁ ପରୀକ୍ଷା କରିବାକୁ ହେବ । ମାତ୍ର ଅସ୍କାର ଓ୍ୱାଇଲ୍ଡ ତାଙ୍କ "ପିକ୍‌ଚର୍‌ସ୍ ଅଫ୍ ଡୋରିଆନ୍ ଗ୍ରେ" ପୁସ୍ତକର ମୁଖବନ୍ଧରେ ଉଚ୍ଚସ୍ୱରରେ କହିଛନ୍ତି, କଳାର ବ୍ୟାବହାରିକ ମୂଲ୍ୟ କିଛି ନାହିଁ । ଉତ୍କୃଷ୍ଟ କଳାର ମୂଳ ଲକ୍ଷଣ ହେଲା ତାହା ଅଦରକାରୀ ହୋଇଥିବ । ଦୈବାତ୍ ଯଦି କୌଣସି କଳାକୃତି

ମଣିଷର ଆବଶ୍ୟକତା ଭିତରକୁ ଆସିଗଲା ତେବେ ତାହା ଅତି ଆକସ୍ମିକ ଓ ଏକାନ୍ତ ଗୌଣ । କଳାକାର ଯଦି ଏହି ଆକସ୍ମିକ ସାଂସାରିକ ଆବଶ୍ୟକତାକୁ ଅସ୍ୱୀକାର କରେ —ତେବେ ଯାଇ ତାର କଳାକୁ ଆମେ ସ୍ୱୀକାର କରିବୁ ।

ଅସ୍କାର ଓ୍ୱାଇଲ୍‌ଡ ଏ ସମ୍ବନ୍ଧେ ଲେଖିଅଛନ୍ତି । "କଳା" କେବେ ହେଲେ ବି ଜୀବନ ବହିର୍ଭୂତ ହୋଇ ନ ପାରେ । ସମାଜ କଳାବିତ୍‌କୁ ସୃଷ୍ଟି କରେ ଓ କଳାବିତ୍ ସମାଜକୁ ଗଢ଼ି ଚାଲେ । ଜୀବନ ଓ ସମାଜ ସଙ୍ଗେ ସମ୍ପର୍କ ଛିଣ୍ଡାଇ ଦେଇ ନିଜର ବିଶେଷତ୍ୱ ବା ସ୍ୱାତନ୍ତ୍ର୍ୟରେ ନିଜେ ଭୋଳ ହୋଇ ରହିବା ତା' ପକ୍ଷରେ ଅସମ୍ଭବ ।

ଅଥଚ ସେଇ ଅସ୍କାର ଓ୍ୱାଇଲଡ୍ ପୁଣି କହିଛନ୍ତି—"ଜୀବନ କଳାକୁ ଅନୁକରଣ କରିବାକୁ ବ୍ୟଗ୍ର ଏବଂ କଳା ଜୀବନକୁ ନିୟନ୍ତ୍ରଣ କରିଥାଏ" ।

ରୋମାଣ୍ଟିକ୍ କବି ସେଲି ତାଙ୍କ "ଡିଫେନ୍‌ସ ଅଫ୍ ପୋଏଟ୍ରି" ପୁସ୍ତକରେ କହନ୍ତି ଯେ—କଳାର ବିସ୍ତୃତି ତାର ସାମାଜିକ ଜୀବନର ନୈତିକ ଓ ମାନସିକ ଉତ୍କର୍ଷ ସାଧନ ଉପରେ ନିର୍ଭର କରେ । ତେଣୁ ଜୀବନ ସହିତ କଳାର ସଂଯୋଗ ଅତି ଘନିଷ୍ଠ । ଅବଶ୍ୟ ଏହି ଯୋଗଟି ହେଉଛି ପ୍ରଚ୍ଛନ୍ନ, ଅନ୍ତରାଳବର୍ତ୍ତୀ ଓ ଅନ୍ତସ୍ଥଳ ବାହୀ । ଅସ୍କାର ଓ୍ୱାଇଲ୍‌ଡ଼ ସେଇ କଥାକୁ ବୁଲାଇ କରି କହନ୍ତି—"କଳା ଦର୍ଶକକୁ ପ୍ରତିବିମ୍ବିତ କରେ—ଜୀବନକୁ ନୁହେଁ" ।

ଏଠି "ଦର୍ଶକ" ଶବ୍ଦର ଅର୍ଥ କଳାର ସ୍ରଷ୍ଟା—ଅର୍ଥାତ୍ ଜୀବନକୁ ଯେ ଦେଖୁଛି ଓ ଯେପରି ଭାବେ ଦେଖୁଛି ଓ କିଭଳି ଭାବେ ଦେଖିବା ଉଚିତ ବୋଲି ଯେ ଭାବୁଛି ଓ ତାହା ବ୍ୟକ୍ତ କରୁଛି—ତାକୁ ବୁଝାଇ ପାରେ । ନଚେତ୍ "କଳା"ର ଦର୍ଶକ ବା ଉପଭୋକ୍ତାମାନଙ୍କୁ ବୁଝାଇ ପାରେ । ଉଭୟ ପକ୍ଷରେ କଳାର ସାମାଜିକ ସମ୍ପର୍କ ସୂଚିତ ହୋଇ ଯାଉଛି ।

ଚିତ୍ର, ଶିଳ୍ପ, କାବ୍ୟ, ସଙ୍ଗୀତ, ନୃତ୍ୟ ଓ ନାଟକାଦି ଯେ କୌଣସି କଳା ହେଉନା କାହିଁକି—"କଳା" ଉତ୍କୃଷ୍ଟ ଓ ଯଥାର୍ଥ ହେବାଲାଗି ଟଲଷ୍ଟୟ ତିନୋଟି ସୂତ୍ର ବାଢ଼ିଛନ୍ତି ।

୧ । ଶିଳ୍ପୀର ଶିଳ୍ପ ସହିତ ଏକ ନୈତିକ ସମ୍ପର୍କ ।

୨ । ପ୍ରକାଶଭଙ୍ଗୀରେ ପରିଚ୍ଛନ୍ନତା ବା ସୌନ୍ଦର୍ଯ୍ୟ ସଂରକ୍ଷଣ ।

୩ । କଳାର ବିଷୟବସ୍ତୁ ପ୍ରତି କଳାବିତ୍‌ର ଏକ ଘନିଷ୍ଠ ନୈତିକ ଓ ହାର୍ଦ୍ଦିକ ସମ୍ପର୍କ । ତାହା ଘୃଣାମୂଳକ ହୋଇପାରେ—ପ୍ରେମମୂଳକ ବି ହୋଇପାରେ ।

ଟେଲଷ୍ଟୟ କହିଛନ୍ତି—କଳାର ବିଷୟବସ୍ତୁ ସମ୍ପୂର୍ଣ୍ଣ ନୂତନ ହେବା ଉଚିତ ଏବଂ ସେହି ନୂତନତ୍ୱ ପୁଣି, ମନୁଷ୍ୟ ଜାତି ପାଇଁ ଏକ ଗୁରୁତ୍ୱପୂର୍ଣ୍ଣ ବିଷୟ ହେବା ଉଚିତ । ଦ୍ୱିତୀୟରେ କଳାର ବିଷୟବସ୍ତୁ ଏପରି ପରିଚ୍ଛନ୍ନ ଭାବେ ବିନ୍ୟସ୍ତ ହେବ ଯାହାକି ସାଧାରଣ ବୋଧଗମ୍ୟ ହେବାର ସମ୍ଭାବନା ଥିବ । ଶେଷରେ, ଶିଳ୍ପ ସୃଷ୍ଟିରେ ଶିଳ୍ପୀର ଅନ୍ତଃପ୍ରେରଣା ସର୍ବାଦୌ ଆବଶ୍ୟକ । ଏଇ ଅନ୍ତଃପ୍ରେରଣାଇ ସୂଚାଇ ଦିଏ ଯେ ଶିଳ୍ପୀ ଯଶ, ଧନ ବା ଆଉକିଛି ପାର୍ଥିବ ଉଦ୍ଦେଶ୍ୟରେ ଶିଳ୍ପ ସୃଷ୍ଟି କରିନାହିଁ—ଶିଳ୍ପ ପ୍ରତି ଓ ଶିଳ୍ପର ବିଷୟବସ୍ତୁ ପ୍ରତି ତାର ଯେ ମନଯୋଗ ଓ ଏହି ମନଯୋଗ ଫଳରେ ତା' ଅନ୍ତଃସ୍ଥଳରେ ତାକୁ ବୁଝାଇବା ଲାଗି ବା ତାକୁ ସଜାଡ଼ିବା ଲାଗି ଯେଉଁ ବ୍ୟାକୁଳତାମୟ ଭାବୋଚ୍ଛ୍ୱାସ ତାହା ହିଁ ତାକୁ ଶିଳ୍ପ ସୃଷ୍ଟି କରିବାରେ ପ୍ରଯୋଜିତ କରିଛି । ତା ମାନେ ସେ ପଦ୍ମର ସୌନ୍ଦର୍ଯ୍ୟକୁ ଦେଖାଇବା ଲାଗି ବ୍ୟାକୁଳ ହୋଇପାରେ—ବା ପଙ୍କ ପୁଷ୍କରିଣୀଟିର ପଙ୍କୋଦ୍ଧାର ଲାଗି ମଧ୍ୟ ବ୍ୟସ୍ତ ହୋଇ ପଡ଼ିପାରେ । ଉଭୟ କ୍ଷେତ୍ରରେ ସେ ଆନ୍ତରିକ ଏବଂ ସମାଜମୁଖୀ । ସେ ପୃଥିବୀର ଉପସ୍ଥିତ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ତାର ବର୍ଣ୍ଣନା କରିପାରେ—ବା ପୃଥିବୀର କୁତ୍ସିତତାକୁ ଦୂର କରିବା ଲାଗି ଏକ ବାସ୍ତବମୁଖୀ ବା ବିପ୍ଳବାତ୍ମକ ପ୍ରଚେଷ୍ଟାରେ ମାତି ତଦନୁସାରେ ତାର ଶିଳ୍ପ ସୃଷ୍ଟି କରିପାରେ । ତାର ଶିଳ୍ପ ଭିତରେ ଈଶ୍ୱର, ବ୍ୟକ୍ତି, ସମାଜ ବା ପ୍ରକୃତିର ସ୍ତୁତି ଆଇପାରେ—ବା ସେମାନଙ୍କ ବିରୁଦ୍ଧରେ ବିଦ୍ରୋହ ଆଇପାରେ । ମାତ୍ର ତାହା ହିଁ ଶିଳ୍ପର ବିଷୟବସ୍ତୁ ପ୍ରତି ଶିଳ୍ପୀର ଯଥାର୍ଥ ଆନ୍ତରିକ ଓ ଦାୟିତ୍ୱପୂର୍ଣ୍ଣ ମନୋଭାବ ।

ଟେଲଷ୍ଟୟଙ୍କ ଶେଷ ସୂତ୍ରଟି ହେଲା ପ୍ରକାଶ କ୍ଷମତା—ଶୈଳୀ । ଏହା ବହୁଜନ ବୋଧଗମ୍ୟ ହେବା ଉଚିତ । ଏଠି ଏତିକି କୁହାଯାଇପାରେ ଯେ—"କଳା" ଯେପରି ସାଧାରଣ ବ୍ୟକ୍ତିର ରୁଚିକୁ ଉଆରି କରେ—ସାଧାରଣ ବ୍ୟକ୍ତି ମଧ୍ୟ ସେହିପରି "କଳା"ର ଆନ୍ତର୍ନିହିତ ମର୍ମ ବୁଝିବାକୁ ଧୈର୍ଯ୍ୟ, ଅଧ୍ୟବସାୟ ଓ ସହାନୁଭୂତିଶୀଳ ହୋଇ କଳାର ଆରାଧନା କରିବା ଉଚିତ । ପୁଣି—ଶିଳ୍ପର ଶୈଳୀରେ "ସଙ୍ଗତି" ଟାବି ଖୁବ୍ ବଡ଼କଥା । ସଙ୍ଗତି ହିଁ ରସ, ଭାବ ଓ ଧ୍ୱନିକୁ ଶକ୍ତି ଦିଏ—ଏବଂ ସେଗୁଡ଼ିକୁ ସଂଚରଣ କ୍ଷମ କରିଥାଏ ।

"କଳା"ର ଇତିହାସ ଦେଖିଲେ ବୁଝାପଡ଼େ ଯେ—କ୍ଲାସିକାଲ୍ ଯୁଗରେ "କଳାର" ବିଷୟବସ୍ତୁ ଓ ତାର ବିନ୍ୟାସ—କୌଶଳ ଉପରେ ହିଁ ବେଶୀ ଜୋର୍ ଦିଆ ଯାଉଥିଲା—ଏବଂ ତଦନୁପାତରେ ତାର୍ ବିନ୍ୟାସ ଗତ ପରିଚ୍ଛନ୍ନତା ଓ ତା' ଉପରେ କଳାକାରର ନିଷ୍ଠାପରତା ଉପରେ କମ୍ ଜୋର୍ ଦିଆ ଯାଉଥିଲା ।

ମଧ୍ୟ ଯୁଗରେ "କଳା"ର ସୌନ୍ଦର୍ଯ୍ୟ ଉପରେ ହିଁ ଗୁରୁତ୍ୱ ଥିଲା ବେଶୀ । ତଦନୁପାତରେ ବିଷୟବସ୍ତୁର ଗୁରୁତ୍ୱ ଓ କଳାକାରର ନିଷ୍ଠାପରତା ଉପରେ ଦୃଷ୍ଟି ଥିଲା କମ୍ ।

କିନ୍ତୁ ବର୍ତ୍ତମାନ, କଳାକାରର ସ୍ୱୀୟକଳା ଉପରେ ନିଷ୍ଠାପରତା ଓ କଳାର ବିଷୟବସ୍ତୁର ସତ୍ୟ ଓ ତାର ଅନ୍ୟାନ୍ୟ ସମ୍ଭାବନାରି ଉପରେ ଜୋର୍ ବେଶୀ । ପ୍ରଚଳିତ ଯୁଗରେ ପୃଥିବୀର ବିଶିଷ୍ଟ ଗାଳ୍ପିକ, ନାଟ୍ୟକାର, ଔପନ୍ୟାସିକ, କବି ଓ ଚିତ୍ରକାରଗଣ କେବଳ ସୌନ୍ଦର୍ଯ୍ୟକୁ ବଡ଼ କରି ଦେଖୁନାହାନ୍ତି—କେବଳ ରସପରିବେଷଣକୁ କର୍ତ୍ତବ୍ୟ ବୋଲି ଭାବୁ ନାହାନ୍ତି । ଦର୍ଶକ ବା ପାଠକର ମନରେ କ୍ଷଣିକ ଆନନ୍ଦ ଦେଇ ବା ସେମାନଙ୍କ ଆଖିରୁ ଟିକିଏ ଲୁହ ଝରାଇ ଦେଇ—ସେମାନେ ନିଶ୍ଚିନ୍ତ ନୁହନ୍ତି । ଆଧୁନିକ ଶିଳ୍ପୀ ଜଣେ ଦାର୍ଶନିକ—ଜଣେ ସାମାଜିକ କର୍ମୀ—ଜଣେ ଆଧ୍ୟାତ୍ମିକ ପୁରୁଷ । ତାର ଆଖିରେ ଏକ ନୂତନ ସ୍ୱପ୍ନ । ତାର ହୃଦୟରେ ଏକ ନୂତନ ବେଦନା । ତାର ଲେଖନୀରେ ଏକ ନୂତନ କର୍ମ ଶକ୍ତିର ପ୍ରଚ୍ଚେଦନା । ସେ ଆଜି ବିଶ୍ୱମୁଖୀ ।

ବିଶ୍ୱର ସମ୍ମିଳିତଚେତନାରେ ବର୍ତ୍ତମାନ ବିଶ୍ୱ-ରାଷ୍ଟ୍ର ଗଢ଼ିବାରେ ସଂକଳ୍ପ କ୍ଷୁରିଲାଅଛି । ଯଦିଓ ଆଜି ଗୋଟିଏ ଚକ୍ରାଧାରି ପୃଥିବୀକୁ ଧ୍ୱଂସ ବା ପ୍ରଳୟ କରିବାର ସଂକଳ୍ପ କରିଗୁଲିଛି । ଏହି ଚକ୍ରାସ୍ରୋତରେ ବର୍ତ୍ତମାନ ରାଜନୀତିର ତରୀ ଗୁଲିଛି । ତେଣୁ ପ୍ରଥମ ସ୍ରୋତରେ "କଳା"ର ତରୀ ନଗୁଲିଲେ ରାଜନୀତିର ବିଷାକ୍ତ ନିଃଶ୍ୱାସରେ ଏ ପୃଥିବୀ ଧ୍ୱଂସ ହୋଇଯିବ । ସମଗ୍ର ବିଶ୍ୱକୁ ଏକ କଲ୍ୟାଣକର ଭ୍ରାତୃବନ୍ଧନରେ ବାନ୍ଧିବା ପାଇଁ ଓ ପୃଥିବୀରେ ଏକ ନୂତନ ମାନବ ଗୋଷ୍ଠୀର ଜନ୍ମଲାଭ ପାଇଁ ଆଜି ବେଶୀ ବ୍ୟାକୁଳ ହୋଇଉଠିଛି—କଳାକାର । ଆସନ୍ତାକାଲିର ନୂତନ ପୃଥିବୀରେ ନୂତନ ଭାବଧାରାରେ ଅନୁପ୍ରାଣିତ ହୋଇ ଯେଉଁମାନେ ଏ ପୃଥିବୀକୁ ଦେବଭୂମି କରିବେ—ସେମାନଙ୍କୁ ଶ୍ରୀ ଅରବିନ୍ଦ "ଅତିମାନବ" ବୋଲି କହିଛନ୍ତି—ଓ ସେଭଳି ଯୁଗକୁ ଅତିମାନସ ଯୁଗ ବୋଲି କହନ୍ତି । ବର୍ତ୍ତମାନର ବିଶିଷ୍ଟ କଳାକାର ଗଣ ସେହି ଯୁଗ, ସେହି ମାନବ ଗୋଷ୍ଠୀ ଓ ସେହି ପୃଥିବୀର ସ୍ୱପ୍ନରେ ବିଭୋର ଓ କ୍ରିୟାଶୀଳ ।



# ଲେଖକ ଓ ପାଠକ

ଆମ ପାଠକଙ୍କର ନିତ୍ୟ ଅଭିଯୋଗ ଯେ ଉତ୍ତମ ଲେଖା ଅଭାବରେ ସେମାନଙ୍କର ପଠନ-ସ୍ପୃହା ମ୍ରିୟମାଣ ହୋଇ ପଡ଼ୁଛି । ଲେଖକଙ୍କର ବି ତଦ୍ରୂପ ବିରକ୍ତି—ଏ ଦେଶରେ ଉପଯୁକ୍ତ ମର୍ମଜ୍ଞ ପାଠକ ନାହାନ୍ତି—ଯାହାଙ୍କପାଇଁ ଆମେ ଲେଖିବୁ ?

ଏହା ଏକ ଚିରନ୍ତନ ସମସ୍ୟା । ଏ ସମ୍ବନ୍ଧେ ନିର୍ଦ୍ଦିଷ୍ଟଭାବେ କିଛି କହି ହେବନାହିଁ । କାରଣ ଉତ୍ତମ ଲେଖକ ଓ ଉତ୍ତମ ପାଠକ ସବୁକାଳେ ଥିଲେ ଏବଂ ଅଛନ୍ତି । ପୁଣି ତଦ୍‌ବିପରୀତ ମଧ୍ୟ ସେହିପରି ଥିଲେ ଓ ଅଛନ୍ତି । ତେବେ ଲେଖକ ଓ ପାଠକ ସବୁ ଯୁଗରେ ପରସ୍ପର ସମ୍ବନ୍ଧେ ବେଶ୍ ସଚେତନ ।

ଆମର ପ୍ରାଚୀନ କବିମାନେ ପାଠକମାନଙ୍କ ସମ୍ବନ୍ଧେ ମୂଳରୁ କିଛି ନ କହି ବା ଶେଷରେ କିଛି ନ କହି କାବ୍ୟାରମ୍ଭ ବା କାବ୍ୟ-ସମାପ୍ତି କରୁ ନ ଥିଲେ । ଭଞ୍ଜେ କହନ୍ତି—"ବିଭିନ୍ନ କାବ୍ୟ ଓ ଅଭିଧାନରେ ଉତ୍ତମ ବୁଦ୍ଧିସଂପନ୍ନ ବ୍ୟକ୍ତିର ଅବଶିଷ୍ଟ ଅଜ୍ଞାନକୁ ଦୂର କରିବା ଲାଗି ତାଙ୍କର କାବ୍ୟ ଅଭିପ୍ରେତ ।" ସେହି ଭଞ୍ଜେ ପୁନଶ୍ଚ କହନ୍ତି—"ପୁରାଣ ଅଭିଧାନ ଆଦି ଜାଣିଥିଲେ ବା ହେବ କ'ଣ ? ଯଦି ସେ ପାଠକ ବିହୃଦ (ହୃଦୟହୀନ) ହୋଇଥାଏ ?" ଅଭିମନ୍ୟୁ କହନ୍ତି—"ଯେଉଁମାନେ ନ୍ୟାୟାଦି ଶାସ୍ତ୍ର, ପୁରାଣ, ବେଦ, ଆଗମ ଓ କାବ୍ୟାଦି ନ୍ୟାସ କରିଥିବେ—ସେହିମାନେ ହିଁ ତାଙ୍କ କାବ୍ୟର ଭାବ ପାଇବେ ।" ପୁନଶ୍ଚ "ଗୁରୁ, କୃଷ୍ଣ ଓ ବୈଷ୍ଣବଙ୍କଠାରେ ଯେଉଁମାନେ ଠକ ନୁହନ୍ତି—ସେଇମାନେହିଁ ତାଙ୍କ କାବ୍ୟର ମର୍ମ ଠିକେ ଠିକେ ଅବଗତ ହେବେ ।" ସେ ପୁଣି କହନ୍ତି "ତାଙ୍କ କାବ୍ୟ-ରାଜ୍ୟ ଭିତରକୁ ଯିବାଲାଗି କିଞ୍ଚିତ ଶ୍ରମ ସ୍ୱୀକାର କଲେ ହିଁ ରସାସ୍ୱାଦନର ଉଜ୍ଜ୍ୱଳମାର୍ଗ ଦୃଶ୍ୟ ହେବ । କିନ୍ତୁ ହିଂଗଡ଼ା ବାଟରେ ପଶିଗଲେ ମୂର୍ଖମାନଙ୍କର ବୁଦ୍ଧିବଣା ହିଁ ସାର ହେବ ।" ଅଭିମନ୍ୟୁ କାମନା କରିଛନ୍ତି—କୋଟିକବିଙ୍କର ଆୟୁଷ ନେଇ ଗୋଟିଏ ବିବେକୀ ଗ୍ରାହକ ବଞ୍ଚିଥିଲେ ବି ଉତ୍ତମ କବିର ମହିମା ଅକ୍ଷୁର୍ଣ୍ଣ ରହିବ । ଦୀନକୃଷ୍ଣ କାବ୍ୟ ଓ ପାଠକର ସମ୍ପର୍କକୁ ସୁନ୍ଦର

ଉପମାରେ ବୁଝାଇଛନ୍ତି । ସେ କହନ୍ତି—"କବିତା ହେଉଛି ବନିତା ସଦୃଶ—କବିତାର ପିତା, ବ୍ୟାଖ୍ୟାକାର ତା'ର ଉପମାତା—ଏବଂ ଯେ ରସିକ, ସେହି କେବଳ ଯଦି ତାକୁ ଭୋଗ କରେ—ତେବେ ତା'ର ଯୋଗ୍ୟତା ପ୍ରତିଷ୍ଠିତ ହୁଏ । କ୍ଲୀବ ଓ ଗୁଆଁରମାନେ କେବଳ ତା'ର ବୈମାତେୟ ଭାଇ ପରି ଦୋଷ ଖୋଜି ବୁଲନ୍ତି ।"

ପାଠକର ଯୋଗ୍ୟତା ସମ୍ପର୍କରେ ଏସବୁ ଗୀରମାନଙ୍କରୁ ଏତିକି ସ୍ପଷ୍ଟ ଯେ, ପାଠକ ବୁଦ୍ଧିମାନ, ଶାସ୍ତ୍ରଜ୍ଞ, ହୃଦୟବାନ୍, ଉଦାର, ସତ୍ତ୍ୱଗୁଣସମ୍ପନ୍ନ ଓ ରସବୋଧ-ନିପୁଣ ହେଲେ ଯାଇ କାବ୍ୟର ମର୍ଯ୍ୟାଦା ଉପଲବ୍ଧି କରିପାରିବେ ।

ଅବଶ୍ୟ କୌଣସି ପାଠକକୁ କାବ୍ୟ ପଠନ ଅଧିକାର ଦେବାଲାଗି ତା'ର ବୁଦ୍ଧି, ହୃଦୟ ଓ ଚରିତ୍ରକୁ ମାପିବା ପାଇଁ ସାର୍ବଜନୀନ ମାନଦଣ୍ଡ ନାହିଁ । ପ୍ରତ୍ୟେକ ରସସ୍ରଷ୍ଟା ଭଳି ପ୍ରତ୍ୟେକ ରସ-ଭୋକ୍ତା ଆପଣାର ଯୋଗ୍ୟତା ଉପରେ ଅତିମାତ୍ରାରେ ପ୍ରତ୍ୟୟଶୀଳ । ଏ କ୍ଷେତ୍ରରେ ସୁଲେଖକ ଓ ସୁପାଠକର ଦୋଷ ଗୁଣଗୁଡ଼ିକୁ ନୈର୍ବ୍ୟକ୍ତିକଭାବେ ବିଶ୍ଳେଷଣ କରାଯାଉ ଏବଂ ଲେଖକ ଓ ପାଠକ ସଚେତନଭାବେ ଆତ୍ମ-ସମୀକ୍ଷଣ ଦ୍ୱାରା ଆପଣାର ଯୋଗ୍ୟତା ସମ୍ପର୍କରେ ଆପେ ଆପେ ସଜ୍ଞାନ ହୁଅନ୍ତୁ ।

**ସୁ-ଲେଖକ କିଏ ? :**

ଅଗ୍ନି ପୁରାଣ କହନ୍ତି—ଏହି ଅପାର କାବ୍ୟରୂପ ସଂସାରର ପ୍ରଜାପତି ହେଉଛନ୍ତି କବି । ଏହି ବିଶ୍ୱ ସେହି ପ୍ରଜାପତି (ବିଧାତା—ଏ ସ୍ଥଳେ କବି)ଙ୍କୁ ଯେପରି ରୁଚି ହୁଏ—ସେ ତାକୁ ତଦନୁଯାୟୀ ନିର୍ମାଣ କରନ୍ତି । ଆଚାର୍ଯ୍ୟ ମମ୍ମଟ ସୁକବିଙ୍କୁ ବିଧାତା ଅପେକ୍ଷା ଅଧିକ ଗୁରୁତ୍ୱ ଦେଇ କହନ୍ତି—ପ୍ରଜାପତିର ସୃଷ୍ଟି ଅପେକ୍ଷା—କବିର ସୃଷ୍ଟି ମହତ୍ତର । କାରଣ କବିର ବାଣୀ "ନବ-ରସ-ରୁଚିରା" ଓ ତେଣୁ "ହ୍ଲାଦୈକମୟୀ ।" ରଜସ୍ତମୋମୁକ୍ତ ପ୍ରାପଞ୍ଚିକ ସୁଖ ଦୁଃଖାଦି ମୋହାନୁ-ଭୂତିରୁ କାବ୍ୟ ସଂଜାତ ହୁଏନାହିଁ । ଶ୍ରେଷ୍ଠ କବି ପ୍ରାଣମୟ ଓ ମନୋମୟ ଶରୀରର ବିକ୍ଷୋଭାଦିରୁ ମୁକ୍ତ ହୋଇ ଉର୍ଦ୍ଧ୍ୱସ୍ଥ ବିଜ୍ଞାନମୟ ଓ ଆନନ୍ଦମୟ ସତ୍ତ୍ୱରେ ଅଧିଷ୍ଠାନ-ପୂର୍ବକ କାବ୍ୟ ରଚନା କରନ୍ତି । ସେଥିପାଇଁ କାବ୍ୟଜାତ ଆନନ୍ଦକୁ "ବ୍ରହ୍ମାନନ୍ଦ—ସହୋଦର" ବୋଲି ଆଖ୍ୟାତ କରାଯାଇଛି । କବି ଯେଉଁ "ଲୋକ"ରୁ ଏହି ବାଣୀମୟ ବିଶ୍ୱ ବା କାବ୍ୟକୁ ସ୍ଫୁରିତ କରେ—ତାକୁ "କଳ୍ପନା ଲୋକ" ବା "ଦିବ୍ୟଲୋକ" ବୋଲି କୁହାଯାଇଛି; କିନ୍ତୁ କେହି ଯଦି ଏହି ଲୌକିକ ବିଶ୍ୱର ଜାଗ୍ରତ ଦୃଷ୍ଟି ନେଇ ସେ "ଲୋକ"କୁ ପ୍ରବେଶ କରେ—ତାକୁ ଏହା ଅଳୀକ ସ୍ୱପ୍ନ ରାଜ୍ୟ ବୋଲି ପ୍ରତୀତ ହୋଇପାରେ ।

କବିର ସେହି 'କଳ୍ପଲୋକ'ରେ ଚାଲିଛି ସୃଜନର ନିତ୍ୟ ନବନବ ଉନ୍ମେଷ । ସେଇଠାରୁ ଆଗତ ଯେଉଁସବୁ ସୃଜନ-ବୀଜ କବିମାନସରେ ସୂକ୍ଷ୍ମ ପ୍ରଜ୍ଞା ବା ଭାବରସ ରୂପେ ଜନ୍ମ ନିଏ---ତାହାହିଁ ବରଂ ପରୋକ୍ଷରେ ଆମର ଏହି ଲୌକିକ ଅସମ୍ପୂର୍ଣ୍ଣ ବିଶ୍ୱକୁ ନିୟନ୍ତ୍ରିତ ଓ ଅଧିକତର ବିକାଶକ୍ଷମ କରିଥାଏ । କବି ସେହି ଧାମରୁ ଆନୀତ ଭାବ ଦ୍ୱାରା ଲୌକିକ ଅଭାବକୁ ପୂର୍ଣ୍ଣ କରନ୍ତି । ସେହି ରାଜ୍ୟରୁ ଅର୍ଜିତ ଜ୍ଞାନ ଦ୍ୱାରା ଲୌକିକ ଅଜ୍ଞାନକୁ ବିଦୂରିତ କରନ୍ତି । ସେହି ଭାବମୟ ଜଗତ ହିଁ ଏହି ଲୌକିକ ଜଗତର ଜନକ । ସେହି ଭାବମୟ ଧାମରେ ଅବସ୍ଥାନ କରି—କବି ଏହି ତେଲ ଲୁଣ ସଂସାରର ଅତି ପ୍ରତ୍ୟକ୍ଷ ସାଧାରଣ ଉପାଦାନମାନଙ୍କୁ ନେଇ କାବ୍ୟ ରଚନା କଲେ ମଧ୍ୟ—ସେଗୁଡ଼ିକର ଅନ୍ତର୍ନିହିତ ରହସ୍ୟ ଉଦ୍‌ଘାଟନ କରି ସେମାନଙ୍କର ନାନାବିଧ ବିକାଶର ସମ୍ଭାବନାଗୁଡ଼ିକୁ ତା'ର ଲେଖା ଭିତରେ ବ୍ୟଞ୍ଜିତ କରିଥାଏ । ଏହିପରି ଭାବେ ପୃଥିବୀର ବିଖ୍ୟାତ କବି, ଔପନ୍ୟାସିକ ଓ ନାଟ୍ୟକାରଗଣ ବିଶ୍ୱଧାରାର ବହୁମୁଖୀ ବିକାଶ ଓ ପରିବର୍ତ୍ତନର କାରଣ ହୋଇଛନ୍ତି ।

ଉତ୍ତମ କବିକୁ ମାଧ୍ୟମ କରି "ସତ୍ୟ" ଏବଂ "ଶିବ" ପ୍ରେରଣାରେ "ସୁନ୍ଦର" ରୂପରେ ଅବତରି ଯାଏ । କବି ସ୍ୱୟଂ ଯେତେବେଳେ ସେହି ଚିନ୍ମୟ ଆନନ୍ଦଧାମରୁ ଲୌକିକ ସ୍ତରକୁ ଫେରି ଆସି ନିଜ କୃତ ସୃଷ୍ଟିକୁ ଚାହେଁ -- ସେତେ-ବେଳେ ସ୍ୱରଚିତ କାବ୍ୟର ନାନା ବ୍ୟଞ୍ଜନାମୟ ସୂକ୍ଷ୍ମ ଅର୍ଥସମ୍ପନ୍ନ ରୂପ ଦେଖି ସେ ନିଜେଇ ପରମ ବିସ୍ମୟରେ ଅଭିଭୂତ ହୋଇପଡ଼େ । ଏଥିଲାଗି ମହାକବିମାନେ ଆପଣାର ସୃଷ୍ଟି ଉପରେ କର୍ତ୍ତୃତ୍ୱପୂର୍ଣ୍ଣ ଅଭିମାନ ନ ରଖି—ତାହା ଦେବୀମୁଖନିଃସୃତ ବୋଲି ବିନୟରେ ସ୍ୱୀକାର କରୁଥିଲେ ।

କବି ନିଜେ ମଧ୍ୟ ପ୍ରାକୃତ ସୁଖଦୁଃଖ ମୋହମଃସ୍ୱାକ୍ରାନ୍ତ ଚେତନାରେ ରହି — ଆପଣାର ଚିନ୍ମୟାନୁଭୂତିପ୍ରସୂତ କାବ୍ୟର ମର୍ମକୁ ଧରିବା ଅସମ୍ଭବ । ଯେଉଁମାନେ ମହାକବି—ସେମାନେ ଏକାଧାରରେ କବି ଓ ମହାନ୍ ପୁରୁଷ । ସେମାନଙ୍କର ଭାବ ଓ କର୍ମ ଏକାଧାରରେ ସଞ୍ଚରିତ । ସେମାନଙ୍କର ସମଗ୍ର ଜୀବନ ହିଁ ସେମାନଙ୍କର କାବ୍ୟ ଓ ସେମାନଙ୍କର ସମଗ୍ର କାବ୍ୟ ହିଁ ସେମାନଙ୍କର ସମଗ୍ର ଜୀବନ । ମାତ୍ର ସାଧାରଣ ଲେଖକଟିର ଦୁଇ ସତ୍ତା—ସେ ଲେଖିଲାବେଳେ ଅପ୍ରାକୃତ ଚେତନାର ଅଧିକାରୀ । ମାତ୍ର ସାଧାରଣ ଜୀବନରେ ଜଣେ ପ୍ରାକୃତ ଜୀବଧର୍ମାଚରିତ ବ୍ୟକ୍ତିଟିଏ ମାତ୍ର ।

କବି ନିଜେ ମଧ୍ୟ ନିଜ କାବ୍ୟର ଜଣେ ସାଧାରଣ ପାଠକ । ମାତ୍ର ସେତିକବେଳେ—ଯେତେବେଳେ ସେ ନିଜର ସ୍ରଷ୍ଟାବ୍ୟକ୍ତିତ୍ୱକୁ ତ୍ୟାଗ କରି ଭୋକ୍ତା ବ୍ୟକ୍ତିତ୍ୱକୁ ଗ୍ରହଣ କରେ । ଏହି ଭୋକ୍ତାର ବ୍ୟକ୍ତିତ୍ୱ ହେଉଛି ପାଠକର ।

## ସୁପାଠକ କିଏ ?

କବି ଯେମିତି ତା'ର ନିଜ କାବ୍ୟର ଜଣେ ପାଠକ—ପାଠକ ବି ସେମିତି ତା'ର ପଠିତ କାବ୍ୟର ଜଣେ କବି । ଏଠି କବି-ଚିତ୍ତ ଓ ପାଠକ-ଚିତ୍ତ କହିଲେ ନୈର୍ବ୍ୟକ୍ତିକ ଦୁଇଟି ପ୍ରସ୍ତୁତ-ଚେତନାକୁ ବୁଝିବାକୁ ହେବ । ଯେକୌଣସି କାବ୍ୟ କେବଳ କବିଚିତ୍ତ-ପ୍ରସୂତ ହେଲେ ଚଳିବ ନାହିଁ—ତାହା ପାଠକ-ଚିତ୍ତ-ପ୍ରତିଫଳିତ ହେଲେ ଯାଇ କାବ୍ୟ ମହିମାତ୍ୱ ଲାଭ କରିବ । ଚକ୍ଷୁ ଯେପରି ସୂର୍ଯ୍ୟଙ୍କର ପ୍ରକାଶକ—ପାଠକର ଚିତ୍ତଫଳକ ସେମିତି କାବ୍ୟ ମହିମାର ପ୍ରକାଶକ । ପାଠକର ଅନ୍ତରସ୍ଥ "ବାସନାଲୋକ"ରେ କବିରଚିତ ଶବ୍ଦାର୍ଥ ବିଚିତ୍ର ସ୍ଫୁରଣର ସୃଷ୍ଟି କରେ । ତାରି ଫଳରେ ହିଁ ଶବ୍ଦାର୍ଥ ଭାବ ଓ ରସ ସୌନ୍ଦର୍ଯ୍ୟର ସମ୍ପାଦନାଦ୍ୱାରା "କାବ୍ୟ" ରୂପେ ଆଖ୍ୟାୟିତ ହୋଇଥାଏ । ରବୀନ୍ଦ୍ରନାଥ ପାଠକର ଚିତ୍ତକୁ ନାନା ଜ୍ୟୋତିର୍ମୟ ରୂପ ଓ ସୌନ୍ଦର୍ଯ୍ୟର ଆତସବାଜିରୂପେ କଳ୍ପନା କରି କହନ୍ତି—କବିର ଭାବାର୍ଥମୟ ଶବ୍ଦରାଜି ସେହିସବୁ ଜ୍ୟୋତିର୍ମୟ ରୂପ ଓ ସୌନ୍ଦର୍ଯ୍ୟର ପ୍ରକାଶକ ଅଗ୍ନିକଣା ସଦୃଶ । ତା' ମାନେ କବିଚିତ୍ତ ଓ ପାଠକ ଚିତ୍ତର ଗଭୀର ଆଶ୍ଳେଷ ବା ସଂଯୋଗ ନ ହେଲେ—ପ୍ରସ୍ତୁତ କାବ୍ୟର ନାନା ବିଚିତ୍ର ଅର୍ଥ, ଭାବ, ଧ୍ୱନି, ବ୍ୟଞ୍ଜନା ଓ ଦ୍ୟୋତନାର ସୁପ୍ରକାଶ ସମ୍ଭବ ହୋଇ ପାରିବ ନାହିଁ ।

ଆଳଙ୍କାରିକମାନେ କହନ୍ତି—ସେହି ହେଉଛି ଯଥାର୍ଥ କାବ୍ୟ-ଆସ୍ୱାଦୟିତା, ଭୋକ୍ତା ବା ପାଠକ, ଯେ କି ଦେଶ-କାଳ ପରିଚ୍ଛିନ୍ନ ଏକ ସହୃଦୟ, ସାମାଜିକ ସତ୍ତା ।

## ସହୃଦୟ ?

ଧ୍ୱନ୍ୟାଲୋକରେ ଅଭିନବଗୁପ୍ତ କହନ୍ତି—କାବ୍ୟଶାସ୍ତ୍ର ବିନୋଦନ ବା ଅନୁଶୀଳନର ଅଭ୍ୟାସବଶତଃ ଯେଉଁ ମନୋମୁକୁର ବିଶଦୀଭୂତ ହୋଇଛି—ସେଥିରେ କାବ୍ୟବର୍ଣ୍ଣିତ ବିଷୟବସ୍ତୁ ସହିତ ତନ୍ମୟତା ପାଇବାର ଯୋଗ୍ୟତା ଆସେ । ସେହି ଯୋଗ୍ୟତାର ଅଧିକାରୀ ପାଠକ ହିଁ "ହୃଦୟ-ସମ୍ବାଦ-ଶାଳୀ" ଅର୍ଥାତ୍ ସହୃଦୟ । ତା'ମାନେ ଉପଯୁକ୍ତ ଶିକ୍ଷା ଅଭ୍ୟାସ ଦ୍ୱାରା ସୌକୁମାର୍ଯ୍ୟ ଓ ସୁରୁଚି ଅର୍ଜନ ନ କଲେ ଏବଂ କବିର ବିଷୟ ସହିତ ତନ୍ମୟତା ଆଣି ନ ପାରିଲେ ପାଠକର ସହୃଦୟ ଯୋଗ୍ୟତା ଆସିବ ନାହିଁ । ସମ୍ବାଦ ଅର୍ଥ "ଅନ୍ୟସାଦୃଶ୍ୟ" । ପାଠକର ଚିତ୍ତ ନିର୍ମଳ ହେଲେ ହିଁ ତହିଁରେ ପ୍ରତିବିମ୍ବନ, ଏକରୂପତା ବା ତନ୍ମୟୀଭାବ ଆସିବା ସମ୍ଭବ ହେବ । ସୁପାଠକର ହୃଦୟ ତେଣୁ ବିମଳ—"ପ୍ରତିଭାନଶାଳୀ" ହୃଦୟ ।

କବି ଯେତେବେଳେ ତା'ର ଲୌକିକ ଚେତନାର ସ୍ତରକୁ ଅତିକ୍ରମ କରି ଚିନ୍ମୟ ସ୍ତରରେ ରହି ତା'ର କାବ୍ୟ ରଚନା କରିଛି—ସେହି କାବ୍ୟର ପାଠକ ମଧ୍ୟ ତେଣୁ ଲୌକିକ ଚେତନାର ସ୍ତରକୁ ଅତିକ୍ରମ ନ କରି—ଦେଶକାଳର ବ୍ୟବ-

ଚ୍ଛେଦ ବିସ୍ମୃତ ନ ହୋଇ—ଏବଂ ତା'ର ବିଶିଷ୍ଟ ଓ ନିର୍ଦ୍ଦିଷ୍ଟ ବ୍ୟକ୍ତିସତ୍ତାର ଊର୍ଦ୍ଧ୍ୱକୁ ନ ଉଠି ସେହି ଲୋକୋତ୍ତର କାବ୍ୟାନନ୍ଦକୁ ଭୋଗ କରି ପାରିବ ନାହିଁ । ପାଠକର ଶବ୍ଦରାଜ୍ୟ ବିଜ୍ଞାନମୟସତ୍ତାର ବୋଧଦ୍ୟୁତିରେ ଉଦ୍‌ଭାସିତ ନ ହେଲେ ଓ ତା'ର ପ୍ରାଣ-ଭୂମି ବିପୁଳ ପୁଲକ ସମ୍ଭାରରେ ପରିପୂର୍ଣ୍ଣ ନ ହେଲେ—ତାକୁ ଶୁଦ୍ଧସତ୍ତ୍ୱର ପରିଚୟ ମିଳେ ନାହିଁ—ତେଣୁ ସେ ବ୍ରହ୍ମାନନ୍ଦ ସହୋଦର-ରସ-ପୁରୁଷଙ୍କର ସାକ୍ଷାତ ପାଏ ନାହିଁ ।

## ସାମାଜିକ :

ପ୍ରତ୍ୟେକ ବ୍ୟକ୍ତି ମଧ୍ୟରେ ତା' ବ୍ୟକ୍ତିତ୍ୱର ଏକ ବୈଶିଷ୍ଟ୍ୟମୟ ଅସାଧାରଣତ୍ୱ ରହିଛି । ତାହାରି ଯୋଗୁଁ ସେ ବ୍ୟଷ୍ଟିଠାରୁ ନିଜକୁ ପୃଥକ୍ କରି ରଖେ । ମାତ୍ର କାବ୍ୟପାଠର ଯୋଗ୍ୟତା ସେହି ବ୍ୟକ୍ତିର ସର୍ବାଧିକ—ଯେ ଏହି ପୃଥକ୍ ବା ବିଶିଷ୍ଟ ବ୍ୟକ୍ତିତ୍ୱର ଅଭିମାନକୁ ଭାଙ୍ଗି, ଊର୍ଦ୍ଧ୍ୱତର ଓ ବ୍ୟାପକତାର ସାଧାରଣ ସତ୍ତ୍ୱ—ଚୈତନ୍ୟରେ ନିଜକୁ ଜାଗ୍ରତ କରିପାରିବ । ବ୍ୟକ୍ତିର ପରିମିତ ବ୍ୟକ୍ତିତ୍ୱବୋଧର ବିଲୋପ ନ ଘଟିଲେ "ସକଳ-ସହୃଦୟ-ସମ୍ବାଦଶାଳିତା" ଆସିବ କିପରି ? ବିଶ୍ୱଚରାଚରର ଅଜସ୍ର ଭାବ, ଚିନ୍ତା, ଚରିତ୍ର ଓ ଆବେଗାଦି ସଙ୍ଗେ ଏକରୂପତା ଆଣିବାକୁ ହେବ । ସମାଜର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ସମ୍ପର୍କରେ ଘଟଣା, ବାସ୍ତବତା ଓ ସ୍ୱପ୍ନ ସଙ୍ଗେ ମିଳିତ ହେବାକୁ ପଡ଼ିବ । ଇତିହାସ, ବିଜ୍ଞାନ, ଅର୍ଥନୀତି, ରାଜନୀତି ଓ ଧର୍ମାଦି ବ୍ୟାପାର କେବଳ ବ୍ୟକ୍ତିଗତ-ସାଧନା ଲବ୍ଧ-ବିଷୟ ନୁହେଁ । ଏଗୁଡ଼ିକ ସମସ୍ତ ସମାଜର ସାଧିତ ବିଷୟ । ଯେଉଁ ବ୍ୟକ୍ତି ଆପଣାର ଭାବାଭାବ ସୀମା ବାହାରେ ଏହି ସବୁ ସମାଜ-ଅର୍ଜିତ ଓ ସମାଜ-ଲବ୍ଧ ବିଷୟଗୁଡ଼ିକୁ ଅନୁଶୀଳନ କରି ସମାଜର ସମସ୍ୟା ସଙ୍ଗେ ନିଜକୁ ଯେତିକି ଜଡ଼ିତ କରେ—କାବ୍ୟ ଅବବୋଧରେ ତାହାର କ୍ଷମତା ସେତିକି ବୃଦ୍ଧିପ୍ରାପ୍ତ ହୁଏ । ନିଜର ଅହଂପ୍ରଧାନ ବୃତ୍ତିଗୁଡ଼ିକୁ ଅପ୍ରଧାନ କଲେ ଯାଇ ପାଠକର ଅନ୍ତରରେ କାବ୍ୟବର୍ଣ୍ଣିତ ବିଷୟଗୁଡ଼ିକ ପ୍ରଧାନ ହୋଇ ଉଠିପାରିବ । କାବ୍ୟ ପଠନରେ ପାଠକର "ମଦୀୟତାଭାବ" ଘୋର ପ୍ରତିବନ୍ଧକ । ତାକୁ "ତଦୀୟତା ଭାବ" ପାଖେ ନିଜକୁ ନିଃଶେଷରେ ସମର୍ପଣ କରିବାକୁ ପଡ଼ିବ । ତାହେଲେ ଯାଇ ତା'ର ଭାବ ତନ୍ମୟ-ଚିତ୍ତରେ ଭାବ, ଅନୁଭବ, ରସ, ଅର୍ଥ ଓ ଚରିତ୍ରର ବିଚିତ୍ର ବିଚିତ୍ରତା ଏକ ଶୁଦ୍ଧ ରସମୂର୍ତ୍ତିରେ ପରିଣତ ହୋଇ ଫୁଟି ଉଠିବେ ।

ମୋଟ ଉପରେ ପାଠକର ଚିତ୍ତ ନାନାଦି ତତ୍ତ୍ୱ, ତଥ୍ୟ, ଓ ଭାବରୂପାଦିର ଜ୍ଞାନ ଓ ବୋଧଶୀଳତାରେ ଅଭ୍ୟସ୍ତ ଓ ବିନ୍ୟସ୍ତ ରହିବା ଉଚିତ; କିନ୍ତୁ ତତ୍‌ସଙ୍ଗେ ସଙ୍ଗେ ସେହି ସବୁ ଚିତ୍ତବୃତ୍ତିଗୁଡ଼ିକ ଉପରେ ତା'ର ସଚେତନତା ମଧ୍ୟ ରହିବା ଉଚିତ ।

## ଶୁଦ୍ଧ ପାଠକ

ଶୁଦ୍ଧପାଠକର ଚିତ୍ତ ଅହଙ୍କାର, ଈର୍ଷା, ସଙ୍କୀର୍ଣ୍ଣତା, କୁସଂସ୍କାର, ମୂଢ଼ତା, ଅବାଧତା, ସଙ୍କୋଚ, ସର୍ବଜ୍ଞମନ୍ୟତା, ଅବିଶ୍ୱାସରୁ ଓ ଅନମନୀୟତାରୁ ମୁକ୍ତ ରହିବା ଉଚିତ । ଅନେକ ପାଠକ ସେମାନଙ୍କର ସଜ୍ଞାନମନରୁ ଏ ଦୋଷଗୁଡ଼ିକୁ ବିଦୂରିତ କରିଥିଲେ ମଧ୍ୟ—ସେମାନଙ୍କର ଅବଚେତନ ଭିତରେ ଏହି "ବିଦ୍ବୃଦ" ଓ "ଅସାମାଜିକ" ଭାବଗୁଡ଼ିକ ପ୍ରଚ୍ଛନ୍ନ ରହିଥାନ୍ତି ।

ଉତ୍ତମ ପାଠକ ଲେଖାଟିଏ ପାଇବାମାତ୍ରେ—ମୁକ୍ତ ଓ ନିର୍ମଳ ଚିତ୍ତରେ ଅତି ନମ୍ରତାର ସହିତ (କବିର ଜାତି, ବୟସ ଓ ରୂପାଦିର ନିର୍ବିଶେଷରେ) ଅନୁଗତ ଶିଷ୍ୟଭଳି ପରମ ଆଗ୍ରହ ଓ ସହାନୁଭୂତିର ସହିତ ତାକୁ ଗ୍ରହଣ କରିବେ । ତା'ପରେ କାବ୍ୟବର୍ଣ୍ଣିତ ବିଷୟବସ୍ତୁ, ଭାବରାଜି, ଶୈଳୀ ଓ ଭାବପ୍ରକାଶରେ ସ୍ୱାତନ୍ତ୍ର୍ୟ ଓ ବୈଚିତ୍ର୍ୟ ପ୍ରତି ଯଥୋଚିତ ଆସ୍ଥା, ବିଶ୍ୱାସ, ପ୍ରଣିଧାନ, ସ୍ୱୀକୃତି ଓ ସମ୍ମାନ ପ୍ରଦାନ କରି କବି ଓ ତା'ର କାବ୍ୟ ପାଖେ ସମ୍ପୂର୍ଣ୍ଣ ଆତ୍ମ-ସମର୍ପଣ କରିବେ । ପାଠକର ଏବଂବିଧ ପ୍ରସ୍ତୁତଚିତ୍ତରେ ପୁଣି ବାରମ୍ବାର ସେହି କାବ୍ୟ ଅନୁଶୀଳିତ ହେଲେ ଯାଇ କାବ୍ୟ ପୁରୁଷ ତାଙ୍କର ସ୍ୱମର୍ମ ଉଦ୍‌ଘାଟନ କରିବେ ।

## ନିକଟ ପାଠକ ଓ ଦୂର ପାଠକ—

ପାଠକ ନିକଟରେ କବି ନିର୍ଦ୍ଦିଷ୍ଟ ସ୍ୱତନ୍ତ୍ର ଓ ବ୍ୟକ୍ତିପଦବାଚୀ । ମାତ୍ର କବି ନିକଟରେ ପାଠକ ଯଦି ନିର୍ଦ୍ଦିଷ୍ଟ ହୋଇଯାଏ—ତେବେ କବିର ଅପମୃତ୍ୟୁ ଅବଶ୍ୟମ୍ଭାବୀ । କୌଣସି ଏକ ବିଶେଷ ସ୍ଥାନର ବା ଉପସ୍ଥିତ କାଳର ପରିଚିତ କେତେକ ପାତ୍ର ଯଦି କବିର ଦୃଷ୍ଟିସୀମା ଭିତରେ ପାଠକରୂପେ ଅବସ୍ଥାନ କରନ୍ତି —ତେବେ ତା'ର କାବ୍ୟଭାବ ଓ ଅର୍ଥବ୍ୟାପ୍ତିରେ ଏକ ନିର୍ଦ୍ଦିଷ୍ଟ ସୀମାଭିତରେ ସଙ୍କୀର୍ଣ୍ଣ ପ୍ରୟୋଜନୀୟତା ପରିପୂରଣରେ ଆବଦ୍ଧ ଓ ନିୟୋଜିତ ହୋଇପଡ଼ିବ । କବି ପକ୍ଷରେ ପାଠକ ତେଣୁ ଭାବବାଚୀ । କବିର ଅବଚେତନରେ ସ୍ଥାନ କାଳ ପାତ୍ରର ଊର୍ଦ୍ଧ୍ୱରେ ଅନିର୍ଦ୍ଦିଷ୍ଟ ଅପରିଚିତ ଭାବମୟ ରସଜ୍ଞ ପୁରୁଷମାନଙ୍କୁ ଶ୍ରୋତାରୂପେ ପାଇ ସେ ତା'ର କାବ୍ୟ ଗାୟନ କରିଯାଏ । ଏଇ ଦୃଷ୍ଟିରୁ କେବଳ, ଉତ୍ତମ କବି ପାଠକ-ନିରପେକ୍ଷ । କବିର ସ୍ୱଅନ୍ତର ମଧ୍ୟରେ ଦୁଇଟି ଚେତନା କାର୍ଯ୍ୟ କରେ । ତା'ର କବି ହୃଦୟରେ "ଦ୍ୱେସୁପର୍ଣ୍ଣା ସଯୁଜା ସଖାୟା" ଏକ କାଳରେ କଳରବମୁଖର ଓ କଳଶ୍ରବଣରତ । ଉତ୍ତମ କବିର ଭିତରଭାଗରେ ନିୟତ ଘୂରୁଥାଏ ଏକକାଳୀନ ଏଇ ଯୁଗ୍ମଲୀଳା--ତା'ର ଅନ୍ତଃପ୍ରକୃତିର କାବ୍ୟସୃଷ୍ଟି ଓ ଅନ୍ତଃପୁରୁଷର କାବ୍ୟବୋଧ । ସେ ନିଜେ ଲେଖୁଥାଏ ଓ ନିଜେ ପଢ଼ୁଥାଏ ।

ସେଥିପାଇଁ ଉତ୍ତମ କବି ବାହ୍ୟଜଗତର ନିନ୍ଦା ପ୍ରଶଂସା ଶୁଣେ—ବିଚାର କରେ—ମାତ୍ର ନିଜ ଭିତରେ କେବେ ବିଚଳିତ ହୁଏ ନାହିଁ । କାରଣ ତା'ର ଅନ୍ତରସ୍ଥ ବୋଧା ପୁରୁଷଟିର ବିଚାର ସଙ୍ଗେ ବାହ୍ୟ ଜଗତର ମତାମତ ମିଳିଗଲେ ସେ ଖୁସି ହୁଏ—ଅଯଥା ବିରକ୍ତ ହୁଏ ନାହିଁ—ଉଦାସୀନ ରହେ । ଏଇ ମର୍ମରେ ସେଦିନ ଭବଭୂତି କହିଥିଲେ—"ଅପାର ଏଇ କାଳ—ବିପୁଳ ଏଇ ପୃଥ୍ୱୀ—ମୁଁ ଜାଣେ ଦିନେ ନା ଦିନେ କୌଣସି ଏକ ସ୍ଥାନରେ ମୋର କେହି ଜଣେ ସହୃଦୟ ସମାନଧର୍ମୀ ଅଛନ୍ତି ବା ଥିବେ ଯେ କି ମୋର ଏହି କାବ୍ୟାତ୍ମା ସଙ୍ଗେ ମିଳିତ ହେବେ ।" କବିର ଏହି ସ୍ରଷ୍ଟା-ସୁଲଭ ଆତ୍ମବିଶ୍ୱାସ ନ ଥିଲେ ସେ କବି ନୁହେଁ—ଲିପିକାର ବା ଲିପିବଣିକମାତ୍ର ।

## କବି ପାଠକଙ୍କୁ ଅପେକ୍ଷା କରିବ କି ?

ପାଠକ-ନିରପେକ୍ଷ ବୋଲି କିନ୍ତୁ କବି ପାଠକ ସମ୍ପର୍କରେ ଦାୟିତ୍ୱହୀନ ନୁହେଁ । ଉପସ୍ଥିତ ଓ ଅନାଗତ ଜନସମାଜର ସମସ୍ୟାପ୍ରତି ସେ ସଚେତନ, ଚିନ୍ତିତ, ସହିଷ୍ଣୁ ଓ ସଦ୍‌ଭାବଯୁକ୍ତ ହୋଇଥିବାରୁ ସେ ପାଠକର ମଙ୍ଗଳକାମୀ—ମଙ୍ଗଳପ୍ରୟାସୀ । ସେ ଏହି ସମସ୍ୟା ବିଜଡ଼ିତ ପୃଥିବୀକୁ ଶୁଦ୍ଧ କରିବାକୁ ଚାହେଁ । ସୁନ୍ଦର କରିବାକୁ ଚାହେଁ । ତେଣୁ ପାଠକ ସମ୍ପର୍କରେ ସେ ସଦା ସଚେତନ । ମାତ୍ର ଏହା ବୋଲି ସେ ପାଠକର ହୀନ ଚିତ୍ତବୃତ୍ତିର ସମର୍ଥକ ନୁହେଁ । ତା'ର ଅଜ୍ଞାନ, କୁସଂସ୍କାର, ମୂଢ଼ତା ଓ ଆଳସ୍ୟପାଖେ ଉତ୍ତମ କବି କେବେ ବି ସାଲିସ୍ କରେ ନାହିଁ । କେବେ କାନ୍ତା-ସମ୍ମିତ ଉପଦେଶ—କେବେ ବା ତୀକ୍ଷ୍ଣ କ୍ଷୁର-ଧାର ବ୍ୟଙ୍ଗବିଦ୍ରୂପ—କେବେ ବା କଲ୍ୟାଣ ପ୍ରଚାର—କେବେ ପୁଣି ମାନବସୁଲଭ ଦିବ୍ୟ-ବୃତ୍ତି-ନିଚୟର ଅଭିରାମ ଲୀଳା ପ୍ରଦର୍ଶନଦ୍ୱାରା ସେ ପାଠକକୁ ସର୍ବଦା ଉନ୍ନତସ୍ତରକୁ ଟାଣିବାଲାଗି ଚେଷ୍ଟା କରେ ।

ମାତ୍ର ଏହା ବୋଲି କବି ପାଠକଠାରୁ ଉଚ୍ଚସ୍ତର ଦାବୀ କରି ନ ପାରେ । କାରଣ କବି ନିଜେ ମଧ୍ୟ ସ୍ୱକାବ୍ୟ ଓ ପର କାବ୍ୟର ପାଠକ ଏବଂ ସେ ମଧ୍ୟ ଲୋକୋତ୍ତର ବିକାଶ ଓ ଆନନ୍ଦ ଲାଗି ବ୍ୟାକୁଳ । ପ୍ରଥମ ଶ୍ରେଣୀର କବି ନିଜ ଜୀବନରେ ମହତ୍ତ୍ୱଲାଗି ସାଧନାକରି, ସଂଗ୍ରାମକରି, ନିଜକୁ ଶୁଦ୍ଧ ବୁଦ୍ଧ ଓ ରସୋତ୍ତୀର୍ଣ୍ଣ କରିସାରିବା ପରେ ତା'ର ସେହି ଲବ୍ଧ ମହତ୍ତ୍ୱକୁ ପାଠକ ନିକଟରେ ସମ୍ବେଦିତ କରନ୍ତି । ମାତ୍ର ଦ୍ୱିତୀୟ ଶ୍ରେଣୀର କବି ଜୀବନଯାକ "ମହତ୍ତ୍ୱ"ର ସ୍ୱପ୍ନ ଦେଖୁଥାଏ—ଏବଂ ସେହି ସ୍ୱପ୍ନଦୃଷ୍ଟ ମହତ୍ତ୍ୱକୁ ପାଇବାଲାଗି ତା'ର ଲୌକିକ ଜୀବନରେ ରୁଧିରାକ୍ତ ସଂଗ୍ରାମ ଚାଲିଥାଏ—ଏବଂ ତା' ସଙ୍ଗେ ସଙ୍ଗେ ମଧ୍ୟ ତା'ର ଏହି ସଂଗ୍ରାମ-ଜର୍ଜର ଅନୁଭୂତିକୁ ସେ ରୂପ ଦିଏ ତା'ର କାବ୍ୟରେ—ପୃଷ୍ଠଭୂମିକାରେ ଥାଏ ତା'ର ସେହି ସ୍ୱପ୍ନର ମହତ୍ତ୍ୱକୁ ଲାଭ କରିବାର ଆନ୍ତରିକ ବ୍ୟାକୁଳ ପ୍ରୟାସ । ମାତ୍ର ତୃତୀୟ ଶ୍ରେଣୀର

କବିର ସ୍ୱପ୍ନ ନାହିଁ—ଅମହିତ ସଙ୍ଗେ କ୍ଷତ ବିକ୍ଷତ ଜୀବନ ସଂଗ୍ରାମ ନାହିଁ—ସ୍ୱପ୍ନ ସଙ୍ଗେ ମିଳିତ ହେବାର ଆଗ୍ରହ ବା ସାଧନା ନାହିଁ । ସେ ବଡ଼ ବଡ଼ କଥା କହେ, କଥାର ଯାଦୁରେ ପାଠକର ମନ ମୋହିଦିଏ । ମାତ୍ର ନିଜେ ଥାଏ ଏକ ଘୋର ନାରକୀୟ ପ୍ରାପଞ୍ଚିକ ଅହଂଗତ ସ୍ଥୂଳଭୂମିରେ । ସେଇଠି ରହିବାକୁ ସେ ଭଲ ବି ପାଏ । ତାକୁ ବରଣ କରେ ।

ପ୍ରଥମ ଶ୍ରେଣୀର କବି ତା'ର କୀର୍ତ୍ତିଠାରୁ ମହତ୍ତର, ଦ୍ୱିତୀୟ ଶ୍ରେଣୀର କବିର କୀର୍ତ୍ତି ତା' ନିଜଠାରୁ ମହତ୍ତର, ମାତ୍ର ତୃତୀୟ ଶ୍ରେଣୀର କବିକୃତି ଯାଦୁକରର ଯାଦୁଖେଳଭଳି । ଏହା ଆପାତତଃ ପ୍ରତୀୟମାନ କରାଏ ମାତ୍ର ତହିଁରେ ପ୍ରତ୍ୟୟ ଆସେ ନାହିଁ—ପ୍ରତୀତି ମଧ୍ୟ ଆସେ ନାହିଁ । ତାହା କାହାକୁ ଉଦ୍‌ବୁଦ୍ଧ କରେ ନାହିଁ । ବ୍ୟକ୍ତିକୁ ନୁହିଁ, ସମାଜକୁ ନୁହିଁ—କାଳକୁ ମଧ୍ୟ ନୁହିଁ—ତାହା କେବଳ ପାଠକର ମନରେ ଭେଲିକି ଲଗାଇଦିଏ ।

**କବିର ଦ୍ରବୀକରଣ କ୍ଷମତା—**

ଉତ୍ତମ ପାଠକର ଚିତ୍ତ କବିଦ୍ୱାରା ଦ୍ରବୀଭୂତ ହୁଏ । ମାତ୍ର ମୂଢ଼ଚିତ୍ତ ପାଠକ ଯଦି ତା'ର ବନ୍ଧ ହୃଦୟର ଦ୍ୱାର କବିଲାଗି ଆଦୌ ନ ଖୋଲେ ତେବେ ତାକୁ ଦ୍ରବୀଭୂତ କରିବା ଅସମ୍ଭବ । ମାତ୍ର ପ୍ରଥମ ଶ୍ରେଣୀର କବି ଯେଉଁମାନେ—ଯେଉଁମାନେ ମହାକବି—ଯେଉଁମାନେ ମୁକ୍ତ ଓ କବି ସେମାନଙ୍କ ପକ୍ଷରେ ଅସାଧ୍ୟ କିଛି ନାହିଁ । ଭଗବାନ ରାମଚନ୍ଦ୍ରଙ୍କର ଗୋଟିଏ ପଦର ସ୍ପର୍ଶରେ ପାଷାଣୀ ଅହଲ୍ୟା ଜୀବନ୍ୟାସ ପାଇଲାପରି—ମହାକବିଙ୍କର ଗୋଟିଏ ଗୋଟିଏ ପଦ ଯେତେ ମୂଢ଼ଚିତ୍ତକୁ ବି ସମୟରେ ତରଳାଇ ଦେଇପାରେ ।

ମାତ୍ର ମନୁଷ୍ୟ ସମାଜରେ ପରିପୂର୍ଣ୍ଣ ଜ୍ଞାନଚିତ୍ତ ଯେପରି ଦୁର୍ଲ୍ଲଭ ସମ୍ପୂର୍ଣ୍ଣ ମୂଢ଼ଚିତ୍ତ ସେହିପରି ଅସମ୍ଭବ । ଏ କ୍ଷେତ୍ରରେ ପାଠକର କଷ୍ଟିତ୍ତ୍ ସଜ୍ଞାନ ପ୍ରସ୍ତୁତି ସର୍ବଦା ନିଶ୍ଚୟ ଆବଶ୍ୟକ । କୌଣସି ପାଠକ ନିଜର ଆଳସ୍ୟ, ଏକମୁଖୀତା ଓ ଗୁଆଁର ଭାବକୁ ଦୃଢ଼ଭାବେ ସଜ୍ଞାନ ଚିତ୍ତରେ ଧରି ମୂଢ଼ତାର ଛଳନାରେ କବି ବା ମହାକବିଙ୍କ ବାଣୀକୁ ଆହ୍ୱାନ ଦେଇପାରିବେ ନାହିଁ । ଏପରି କ୍ଷେତ୍ରରେ ନାନା ସ୍ଥୂଳଘାତ ପ୍ରତିଘାତମୟ କଠିଣ ଅଭିଜ୍ଞତା ତା'ର ଏହି ମୂଢ଼ଚିତ୍ତ କାଠିଣ୍ୟକୁ କୋମଳ, ତରଳ ଓ ସୂକ୍ଷ୍ମ କରିବାରେ ସାହାଯ୍ୟ କରେ । କାରଣ ବାଙ୍ମୟ ଅନୁଭୂତିର କ୍ଷମତା ଲାଭକରିବା ପୂର୍ବରୁ ଆମର ଚିତ୍ତ ବହୁ ଘାତପ୍ରତିଘାତମୟ ଯନ୍ତ୍ରଣା ଭୋଗ କରିଥାଏ ଏବଂ ଏହି ଯନ୍ତ୍ରଣାଗୁଡ଼ିକ ଆମର "ବାସନାଲୋକ"ରେ "ବେଦନା"

ରୂପେ ଅବସ୍ଥାନ କରୁଥାନ୍ତି । ଉତ୍ତମ ରସ ବା ଅର୍ଥମୟ ବାକ୍ ସେଇ "ବେଦନା" ଅନୁଭୂତିକୁ ପ୍ରକାଶିତ କରନ୍ତି ମାତ୍ର ।

ସର୍ବଶେଷରେ କବି ଓ ପାଠକ ଉଭୟେ "ଅହଂ-ମୁକ୍ତ" ହେବା ଉଚିତ । କାରଣ "ଅହଙ୍କାର" ପାଠକକୁ ଅନ୍ୟମନସ୍କ ଅସାବଧାନ ଓ ବାସ୍ତବ୍ କରାଇଥାଏ ଓ କବିକୁ କରାଇଥାଏ ମନମୁଖୀ-ଖିଆଲି । ଫଳରେ କବି ହୁଏ ଦୁର୍ବୋଧ ଓ ପାଠକ ହୋଇପଡ଼େ ଅବୋଧ ।

କବି, କାବ୍ୟ ଓ ପାଠକ ଯେଉଁଠି ଏହି ତ୍ରିବେଣୀ ସଂଯୋଗ ତାହା ହିଁ— "କାବ୍ୟତୀର୍ଥ"—"ରସ ରାଜ୍ୟ" । ବ୍ୟାସତନୁଜ ଶୁକଦେବ, ପରମକାବ୍ୟ ଭାଗବତ ଓ ପରମ ଶ୍ରୋତା ପରୀକ୍ଷିତ—ଯେଉଁଠି ଏହି ତିନିଙ୍କର ମହାମିଳନ ସଂଘଟିତ, ସେଠି "ମୃତ୍ୟୁ ମଧ୍ୟ ଅମୃତର ସୋପାନମାତ୍ର ।"



# ସ୍ରଷ୍ଟାର ବେଦନାବୋଧ

**ଯନ୍ତ୍ରଣା :**

ବିଶ୍ୱର ଯାବତୀୟ ସୃଷ୍ଟି ମୂଳରେ ଏକ ଆଦିମ, ସନାତନ ଓ ଅପରିହାର୍ଯ୍ୟ ଯନ୍ତ୍ରଣା ରହିଛି । ପ୍ରଥମତଃ ବୀଜରୂପୀ ବାହ୍ୟବସ୍ତୁକୁ ନିଜଭିତରେ ଗ୍ରହଣ କଲାବେଳେ ବୀଜ-ବପ୍ତା ସଙ୍ଗେ ମିଳନକ୍ରିୟାରୁ ଉପଜାତ ଯେଉଁ ତାପ, ସଂଘର୍ଷ ଓ ଉତ୍ପୀଡ଼ନ ଗ୍ରହୀତାକୁ ସହ୍ୟ କରିବାକୁ ପଡ଼େ—ପୁଣି ନିଜର ସମସ୍ତ ବିକ୍ଷୋଭ ଅନମନୀୟତା ଓ ଅନିଚ୍ଛୁକତାକୁ ବିସର୍ଜନ ଦେଇ ନିଜକୁ ଯେପରିଭାବେ ସମର୍ପଣ କରିଦେବାକୁ ହୁଏ—ସେହିସବୁ କ୍ରିୟା ପ୍ରତିକ୍ରିୟାଗୁଡ଼ିକ ଅବ୍ୟକ୍ତ ହେଲେ ମଧ୍ୟ ଯନ୍ତ୍ରଣାଦାୟକ । ବୀଜ ଗୃହୀତ ହେଲା ପରେ ପୁଣି ସେହି ବୀଜକୁ ଆପଣା ଭିତରେ ରକ୍ଷାକରି, ତାକୁ ଆପଣାର ସତ୍ତ୍ୱସ୍ଥ କରି— ଆପଣା ସତ୍ତ୍ୱରୁ ରସ ପ୍ରଦାନ କରି ତା'ର ଗଠନ ଓ ପରିପୁଷ୍ଟୀକରଣ-ଠାରୁ ପରିଶେଷରେ ତାକୁ ବାହାରେ ପ୍ରକାଶ କଲାବେଳେ ବିଷୟବସ୍ତୁଟିକୁ ଉଦ୍‌ଗୀରଣ କରିବାଲାଗି ସ୍ରଷ୍ଟାର ନିଜଭିତରୁ ଏକ ଅଜଣା ବାହ୍ୟ ବଳାତ୍କାର—ସାକାର ପରିପୁଷ୍ଟ ସତ୍ତ୍ୱାଟିର ବହିର୍ଗମନରେ ନିଜଆଡୁ ବେଗାତ୍ମକ ପ୍ରଚେଷ୍ଟା—ପୁଣି ସ୍ୱୟଂ ସ୍ରଷ୍ଟାଆଡୁ ମଧ୍ୟ ପ୍ରକାଶ କରିବାଲାଗି ଏକ ସଂଗୁପ୍ତ ସଂବେଗାତ୍ମକ ଇଚ୍ଛାଶକ୍ତି—ଏ ସବୁ ମିଶି ସ୍ରଷ୍ଟା ପକ୍ଷରେ କେବଳ ଯନ୍ତ୍ରଣା ହିଁ ଅନୁଭୂକ୍ତ ହୋଇଥାଏ ।

**ବେଦନା :**

ଭାବ-ଜଗତରେ ଯେଉଁମାନେ ସ୍ରଷ୍ଟା (ଶିଳ୍ପୀ କବି ଓ ସୁରକାର ଆଦି) ସେମାନେ ମଧ୍ୟ ଶିଳ୍ପସୃଷ୍ଟିରେ ଅବିକଳ ଏହି ପ୍ରାଣିଜଗତର ସୃଷ୍ଟିପ୍ରକ୍ରିୟାଜନିତ ଯନ୍ତ୍ରଣାଭଳି ଯନ୍ତ୍ରଣା ଭୋଗ କରିଥାନ୍ତି, ମାତ୍ର ପ୍ରାଣିସ୍ତରୀୟ ସୃଷ୍ଟିରେ ଯାହା "ଯନ୍ତ୍ରଣା" —ଭାବସ୍ତରର ସର୍ଜନାରେ ତାହା "ବେଦନା"ରେ ପରିଣତ ହୋଇଯାଏ । କାରଣ ପ୍ରାଣିସ୍ତରରେ ଜନ୍ମ କରିବା ଏକ ପ୍ରାକୃତିକ ବ୍ୟାପାର ଏବଂ ଏଥିରେ ସ୍ରଷ୍ଟାର ଏକ

ଅଚେତନ ମାଧ୍ୟମ ହେବା ବ୍ୟତୀତ ଆଉ ଗତ୍ୟନ୍ତର ନାହିଁ । ଏଠ ଯନ୍ତ୍ରଣାଟି ପୁରାପୂରି ଜୈବିକ, ମାତ୍ର ଶିଳ୍ପ କ୍ଷେତ୍ରରେ – ମାନେ କଳା କ୍ଷେତ୍ରରେ ଭାବ-ବୀଜ ଗ୍ରହଣଠାରୁ ଆନ୍ତ୍ରୀଣ ରସ-ପୁଷ୍ଟୀକରଣ-ପ୍ରକ୍ରିୟାଦେଇ ଶବ୍ଦ, ବାକ୍ୟ, ଧ୍ୱନି, ରଙ୍ଗ ବା ସୁର୍ ଆଦି ମାଧ୍ୟମରେ ପ୍ରକାଶ କଲପର୍ଯ୍ୟନ୍ତ ଶିଳ୍ପୀ ଏକ ସଚେତନ ବିଧାତାର ଭୂମିକାରେ ଅବତୀର୍ଣ୍ଣ ହୋଇଥାଏ । ସେ ଜାଣେ ସେ କ'ଣ ଗ୍ରହଣ କରୁଛି—କ'ଣ ବର୍ଜନ କରୁଛି – କାହାଠାରୁ ଗ୍ରହଣ କରୁଛି ଓ କେଉଁଥିପାଇଁ ଗ୍ରହଣ କରୁଛି ଓ ତ୍ୟାଗ କରୁଛି —କିପରି ଗଠନ କରୁଛି ଓ କେଉଁଭଳି ପ୍ରକାଶ କରୁଛି । ଅନ୍ୟାର୍ଥରେ ସେ ଜାଣେ – ସେ ଯନ୍ତ୍ରଣା ପାଉଛି ଓ ଏହି ଯନ୍ତ୍ରଣାନୁଭୋଗ ତା'ର ସ୍ୱେଚ୍ଛା ବଶତ । ଏଠି ଯନ୍ତ୍ରଣାଟି ପୁରାପୂରି ଆତ୍ମିକ । ସଂପୂର୍ଣ୍ଣ ସ୍ୱାଧୀନଭାବେ ସେ ତାକୁ ଗ୍ରହଣ କରି ନେଇଛି । ଅବଶ୍ୟ ପ୍ରାଣସ୍ତରର ସୃଷ୍ଟି ପ୍ରକ୍ରିୟାରେ ପ୍ରକୃତିଦ୍ୱାରା ଜୀବ ବାଧ୍ୟ ହେଲପରି, ଏଠାରେ ମଧ୍ୟ ଏକ ଚିନ୍ମୟ ପୁରୁଷର ଜୈବୀ ଶକ୍ତି ତା'ର ପ୍ରଚୋଦକଭାବେ କାର୍ଯ୍ୟ କରିଥାଏ । ପ୍ରାଣ-ଜଗତର ବାଧ୍ୟବାଧକତା ବଦଳରେ ଭାବଜଗତର ସୃଷ୍ଟି ମୂଳରେ ରହିଛି ଏକ ଚିନ୍ମୟୀ ଜୈବୀ ପ୍ରଚୋଦନା – "ଶିବେତର-କ୍ଷତୟେ" ।

## ବେଦନାର ହେତୁ :

ଏହିଭାବେ ଦେଖିଲେ ଶିଳ୍ପମାତ୍ରେହିଁ ବେଦନା-ପ୍ରସୂତ । ଶୃଙ୍ଗାରଠାରୁ ଶାନ୍ତ ପର୍ଯ୍ୟନ୍ତ ସମସ୍ତ ରସର ମୂଳ ଏହି ବେଦନାବୋଧ ।

ଯୁଗ ଯୁଗଧରି ଶିଳ୍ପୀର ମନଭିତରେ ବାହ୍ୟ ଜଗତର କେତେକ ପ୍ରଧାନ ଘଟଣା, ଯଥା – ମୃତ୍ୟୁ, ଅବିରାମ ଗତିଶୀଳକାଳ ଓ ତା'ର ନିର୍ମମ ଧ୍ୱଂସକାରିତା, ଅନ୍ଧ ଅବୋଧ ନିୟତିର ନିଦାରୁଣ କ୍ରିୟା, ସାମାଜିକ ଅବିଚାରରେ ବ୍ୟକ୍ତିର ଆକ୍ରାନ୍ତତା, ବଳଦୃପ୍ତ ଦର୍ପିଷ୍ଠ ଗୋଷ୍ଠୀର ଦୁର୍ବଳ ଗୋଷ୍ଠୀ ଉପରେ ଆକ୍ରମଣ, ବୁଦ୍ଧିମାନ ଧୂର୍ତ୍ତ-ମାନଙ୍କର ଲୁଣ୍ଠନ ଓ ଶୋଷଣାଦି ଘଟଣା କବି-ମନରେ ଗଭୀର ଶୋକାବହ ପ୍ରତିକ୍ରିୟା ସୃଷ୍ଟି କରିଥାଏ । ପୁଣି ନିଜର ଅନ୍ତରମଧ୍ୟରେ ବି ନାନାଦି ପାଶବିକ ପ୍ରବୃତ୍ତିଗୁଡ଼ିକ ସହ ନିଜର ଯେଉଁସବୁ ସଂଘର୍ଷ ଦ୍ୱନ୍ଦ୍ୱ ଓ ତାଡ଼ନାଦି ପ୍ରତିକ୍ରିୟା ସେସବୁକୁ ଦ୍ରଷ୍ଟାହିସାବରେ ପ୍ରତ୍ୟକ୍ଷ କରି ସେ ସେହି ଯନ୍ତ୍ରଣାଇ ମାତ୍ର ଭୋଗ କରିଥାଏ ।

## ମୃତ୍ୟୁ ଓ ଅବିଦ୍ୟା :

ମୋଟାମୋଟି ପ୍ରତ୍ୟେକ ଶିଳ୍ପୀ ସଂସାରପ୍ରପଞ୍ଚରେ ଓ ଆପଣାଭିତରେ ଦୁଃଖର ଦୁଇଟି ମାତ୍ର ମୁଖ୍ୟ "ହେତୁ" ଲକ୍ଷ୍ୟ କରିଥାନ୍ତି । ଏକରେ ମୃତ୍ୟୁର ଅପରି-ହାର୍ଯ୍ୟତା—ଦୁଇରେ ଅବିଦ୍ୟା ବା ଅଜ୍ଞାନର ଅତ୍ୟାଚାର । ଅବିଦ୍ୟା ବା ଅଜ୍ଞାନଏକ

ବ୍ୟକ୍ତିନିଷ୍ଠ ସାମାଜିକ ସମସ୍ୟା ଓ ସାମାଜିକ ଚିନ୍ତା । ଅବିଦ୍ୟା ବା ଅଜ୍ଞାନବଶରୁ ବ୍ୟକ୍ତି ଓ ସମାଜ ନାନାବିଧ ଆଧିଭୌତିକ ଏପରିକି ଆଧିଦୈବିକ ଦୁଃଖ ଯନ୍ତ୍ରଣାର ଶିକାର ହୋଇପଡ଼େ । ସମାଜ-ନିଷ୍ଠ ଶିଳ୍ପୀ-ବ୍ୟକ୍ତି ଓ ସମାଜର ଏହି ଦୁଃଖକୁ ମର୍ମେ ମର୍ମେ ଗ୍ରହଣ କରେ ଓ ଏଥିରୁ ନିଷ୍କୃତି ପାଇବାର ଉପାୟସ୍ୱରୂପ ଚିନ୍ମୟୀ ଶୈବୀ ଶକ୍ତିକୁ ଆହ୍ୱାନ କରେ ଏବଂ ତା'ର ଶିଳ୍ପମାଧ୍ୟମରେ ସମାଜକୁ ଏଥିରୁ ନିଷ୍କୃତି ପାଇବାର ପ୍ରେରଣା ଯୋଗାଇ ଦିଏ । ତା'ର ଶିଳ୍ପଭିତରେ ବିପ୍ଳବର ସୁର୍ ବାଜି ଉଠେ – ।

ମାତ୍ର ମୃତ୍ୟୁ-ଚିନ୍ତା ଶିଳ୍ପୀର ସ୍ୱଗତ ଚିନ୍ତା ଏବଂ ସ୍ୱଗତ ସମସ୍ୟା । ଏହି ଚିନ୍ତା ତାକୁ ଜୀବନର ମୂଳ ପର୍ଯ୍ୟନ୍ତ ଘେନିଯାଏ ଏବଂ ଜୀବନର ମୂଲ୍ୟ, ପରିଣତି ଓ ଲକ୍ଷ୍ୟ ସମ୍ବନ୍ଧେ ସଚେତନ କରାଇ ଦିଏ । ମୃତ୍ୟୁ-ଜନିତ ବେଦନା-ବୋଧରୁ ଜନ୍ମେ ଶିଳ୍ପୀର ଆତ୍ମଜ୍ଞାନ । ତା'ର ଶିଳ୍ପ ଭିତରେ ବାଜି ଉଠେ ଜୀବନର ସୁର୍—ଯାହା ମରଣର ଛନ୍ଦରେ ସ୍ପନ୍ଦିତ ଓ ସଂଯମିତ ।

**ନିରାଶାବୋଧ ବେଦନାବୋଧ ନୁହେଁ :**

ଏହି ଦୁଇପ୍ରକାର ଦୁଃଖର ହେତୁ ସଙ୍ଗେ ଜଡ଼ିତ ହେଲେ ଯାଇ ଶିଳ୍ପୀ ନିଜେ ସାର୍ଥକ ହେବ ଓ ତାର ଶିଳ୍ପ ମଧ୍ୟ ସାର୍ଥକ ହେବ । ମାତ୍ର ଯେଉଁ ଶିଳ୍ପୀ ଦୁଃଖର ମୂଳ ହେତୁ ସଙ୍ଗେ ଜଡ଼ିତ ନ ହୋଇ ସର୍ବଦା ଏକ ନିରାପଦ ଦୂରତାରେ ଥାଇ (ଯାହା ସର୍ବଥା ଅସମ୍ଭବ) କେବଳ ଏକ ପ୍ରକାର ସ୍ୱାର୍ଥ-ସୁଖାଭିଳାଷୀ ହୋଇ ବାରମ୍ବାର ବ୍ୟର୍ଥମନୋରଥ ହୁଏ—ସେତେବେଳେ ଏକ ଘୋର ନିରାଶାତ୍ମକ ବ୍ୟର୍ଥତାବୋଧରେ ନିଜେ ଆକ୍ରାନ୍ତ ହୋଇପଡ଼ି ସେ ନିର୍ଦ୍ଦ୍ୱନ୍ଦ୍ୱରେ ଧାରଣା କରିନିଏ ଯେ—"ଏ ବିଶ୍ୱ ଅନନ୍ତ ଦୁଃଖର ଆଧାର ଏବଂ ରଙ୍ଗମଞ୍ଚ । ଏଠି ମୃତ୍ୟୁ, ରୋଗ, ଅତ୍ୟାଚାର ଓ ଅଜ୍ଞାନ ଚିରନ୍ତନ । ଆଉ ଏଥିରୁ ନିଷ୍କୃତି ନାହିଁ । ଜଗତକୁ ଓ ମନୁଷ୍ୟକୁ ଏକ ଅନ୍ଧ ବିଧାତା ଯେକୌଣସି ପ୍ରକାରେ ସୃଷ୍ଟି କରି ଗୋଟାଏ ଅନ୍ଧନିୟତି ହାତରେ ଗୁଞ୍ଜି ଦେଇଛି ଏବଂ ସେହି ଅନ୍ଧନିୟତି ତାକୁ ଗୋଟାଏ ତପ୍ତ ତୈଳକୁଣ୍ଡ ଭିତରକୁ ନିକ୍ଷେପ କରି ଦେଇଛି— ଆଉ ସେଥିରୁ ନିସ୍ତାର ନାହିଁ । ମନୁଷ୍ୟ ଏଠାରେ ଅସହାୟ ।"

ଏଭଳି ଶିଳ୍ପୀର ମନୋଭାବ ଓ ଶିଳ୍ପକୁ ଆପାତ ଦୃଷ୍ଟିରେ ବେଦନାବୋଧ-ପ୍ରସୂତ ବୋଲି ମନେ ହୋଇପାରେ, ମାତ୍ର ଟିକିଏ ନିରୀକ୍ଷଣ କଲେ ଜଣାପଡ଼େ—ଏହା ପଛରେ ରହିଛି ଘୋର ଅନ୍ଧ ନୃଶଂସତା ଓ ଦାୟିତ୍ୱହୀନତା ।

ଏଭଳି ମନୋଭାବ କେବଳ ଶିଳ୍ପୀର ନିଜର ସ୍ୱାର୍ଥପର ଉଚ୍ଚାକାଙ୍କ୍ଷାର ଅପର-ସ୍ୱାର୍ଥ-ସଂଘର୍ଷଣ-ଜନିତ ବିପର୍ଯ୍ୟୟଯୋଗୁଁ ଗଠିତ ହୋଇଥାଏ ଏବଂ ଥରେ ଏହିଭଳି ମନୋଭାବ ଶିଳ୍ପୀଠାରେ ସଙ୍ଗଠିତ ହୋଇଗଲେ ଶିଳ୍ପୀକୁ ମଧ୍ୟ ଆଉ ଏଥିରୁ

ନିସ୍ତାର ମିଳେ ନାହିଁ । ସେ କ୍ରମଶଃ ସମସ୍ତ ଉଦ୍‌ଯୋଗ, ସଙ୍ଗଠନ ଓ ସଂଗ୍ରାମଗତ ବ୍ୟାପାରକୁ ଅର୍ଥହୀନ ପ୍ରୟାସ ବୋଲି ମନେକରେ ଏବଂ ତାହା ହିଁ ତା'ର ଶିଳ୍ପ-ମାଧ୍ୟମରେ ପ୍ରଚାର କରିଚାଲେ ! ତା'ର ରଚନାରେ ପ୍ରକାଶିତ ହୋଇପଡ଼େ ସ୍ୱାର୍ଥ ବିପର୍ଯ୍ୟୟଗତ ପ୍ରତିହିଂସାମୂଳକ କେବଳ ଭର୍ତ୍ସନା, କେବଳ ଅଭିଯୋଗ, କେବଳ ନିନ୍ଦାବାଦ ଆଉ କେବଳ ବିକ୍ଷୋଭ—ଯାହା ଆପାତଦୃଷ୍ଟିରେ ମାତ୍ର ପ୍ରଥମ ଥର ପାଇଁ ମନେ ହୋଇପାରେ ବିପ୍ଳବାତ୍ମକ ବା ବାସ୍ତବବାଦୀ ଶିଳ୍ପ ବୋଲି—ମାତ୍ର ସଙ୍ଗେ ସଙ୍ଗେ ତା'ର ପ୍ରକୃତ ସ୍ୱରୂପ ଧରା ପଡ଼ିଯାଏ । ଏଠାରେ ଶିଳ୍ପୀ ନିଜେ ନିରାଶ, ନିଷ୍କ୍ରିୟ ଓ ସଂଗ୍ରାମବିମୁଖ ହୋଇ ଅପରକୁ ମଧ୍ୟ ସେଥିରେ ଆକ୍ରାନ୍ତ କରିପକାଏ । ଫଳରେ ସେ ନିଜେ ମଧ୍ୟ ହୋଇଉଠେ ଆଜିର ଏକ ଅତ୍ୟାଶ୍ଚର୍ଯ୍ୟ ଅନ୍ଧନିୟତି—ଯେ କି ପ୍ରଥମ ଅଦୃଶ୍ୟ ଅନ୍ଧନିୟତିଦ୍ୱାରା ମାସ୍ୟମାନ ଓ ତପ୍ତ ତୈଳଭାଣ୍ଡରେ ନିକ୍ଷିପ୍ୟମାନ କାତର ବ୍ୟକ୍ତିମାନଙ୍କୁ ବୁଝାଇଦିଏ ଯେ—"ଆଉ ଏଥିରୁ ତୁମ୍ଭମାନଙ୍କର ନିସ୍ତାର ନାହିଁ—ତୁମ୍ଭେମାନେ ହତଭାଗ୍ୟ—ସମସ୍ତ ସଂଗ୍ରାମ ନିଷ୍ଫଳ । ଏଥିରୁ ନିସ୍ତାର ପାଇବା ଲାଗି ତୁମ୍ଭେମାନେ ଯଦି ଏହା ବାହାରକୁ ଡେଇଁପଡ଼ିବ—ତେବେ ଯାଇ ପଡ଼ିବ ଗୋଟାଏ ଉଷ୍ଣ ଉଷ୍ଣ ତରଳ ମରୁଭୂମି ଭିତରେ···ଏଠାରେ କୌଣସି ମୂଲ୍ୟ ସ୍ଥାୟୀ ନୁହେଁ—ସବୁ ବିଶ୍ୱାସ ଅନ୍ଧ—ସବୁ ଚିନ୍ତା ନିରର୍ଥକ ।"

ପ୍ରତ୍ୟକ୍ଷଭାବେ ଓ ପରୋକ୍ଷଭାବେ ଏହି ମନୋଭାବସମ୍ବଳିତ ବହୁ ଗଳ୍ପ ନାଟକ ଉପନ୍ୟାସ ବିଦେଶରେ ଓ ସେଗୁଡ଼ିକର ନକଲ ଅନୁକୃତିରେ ଆମ ଦେଶରେ ଲିଖିତ ହୋଇ ତଥାକଥିତ ଉଗ୍ର ଆଧୁନିକତା ନାମରେ ଖ୍ୟାତ ହେବାକୁ ବାରମ୍ବାର ଚେଷ୍ଟା କରିଛି ଓ ବିଫଳ ମଧ୍ୟ ହୋଇଛି । କାରଣ ବିଧାତା ଅନ୍ଧ ହୋଇପାରେ—ଶିଳ୍ପୀ ମଧ୍ୟ ଅନ୍ଧ ହୋଇପାରେ—ମାତ୍ର ମନୁଷ୍ୟ ସାମଗ୍ରିକଭାବେ କେବେ ଅନ୍ଧ ନ ଥିଲା, ନାହିଁ—ନୋହିବ ।

## ନିରାଶଶିଳ୍ପୀ ଓ ଆଶାବାଦୀ ସମାଜ :

ସାମଗ୍ରିକଭାବେ ମନୁଷ୍ୟସମାଜ ଯେ କୌଣସି ମହାନ୍ ଶିଳ୍ପୀଠାରୁ ମଧ୍ୟ ମହତ୍ତ୍ୱ । କ୍ରମବିକାଶର ଇତିହାସରେ ମନୁଷ୍ୟ ଯେତେ କମ୍ ଅଗ୍ରଗତି କରିଥାଉ ପଛେ—ପରାଜୟକୁ, ନିରୁଦ୍ୟମକୁ, ହତୋତ୍ସାହତାକୁ ସେ ସର୍ବଦା ଅସ୍ୱୀକାର କରିଆସିଛି ।

କୌଣସି ବ୍ୟକ୍ତି ବା କୌଣସି ଗୋଷ୍ଠୀ ସାମଗ୍ରିକଭାବେ ମନୁଷ୍ୟସମାଜକୁ ଶେଷ ପର୍ଯ୍ୟନ୍ତ ପରିଚାଳନା କରିପାରିବ ନାହିଁ । ତାହା ପୁଣି ଯଦି ତା'ର ସାମଗ୍ରିକ-ଭାବେ ଅଗ୍ରଗତି ପଥରେ ବାଧକ ହୋଇ ଠିଆହୁଏ । ମନୁଷ୍ୟର ଆଭ୍ୟନ୍ତରୀଣ ସ୍ୱଭାବରେ

ବା ବାହ୍ୟ ପରିଧାଣରେ ନିମ୍ନପ୍ରକୃତିର ସମସ୍ତ ଚକ୍ରାନ୍ତ ଅନ୍ଧ କ୍ରିୟା ପ୍ରତିକ୍ରିୟା ଓ ପେଷଣ ଭିତରେ ବହୁ ବ୍ୟକ୍ତି ବା ଗୋଷ୍ଠୀ ନଷ୍ଟଭ୍ରଷ୍ଟ ହୋଇ ଯାଇପାରନ୍ତି—ମାତ୍ର ପୁରାଣ ମଣିଷର "ସମଗ୍ର ଆତ୍ମା" କେବେହେଲେ ପରାଜୟ ସ୍ୱୀକାର କରିବ ନାହିଁ । ସେ ରହିବ ଚିରନ୍ତନ ଦୁର୍ବିନୀତ, ଉଦ୍ଧତ, ଗର୍ବିତ ଓ ସଂଗ୍ରାମରତ । ସମସ୍ତ ବ୍ୟକ୍ତିଗତ ବା ଗୋଷ୍ଠୀଗତ ଅସାଫଲ୍ୟ ଭିତରେ ବି ମାନବାତ୍ମାର ଏକ ସମଷ୍ଟିଗତ ମହିମାର ଔଜ୍ଜ୍ୱଲ୍ୟ ନିଶ୍ଚୟ ବିଭାସିତ କରି ରଖିବ ଭବିଷ୍ୟତର ଦିଗ୍‌ବଳୟକୁ । ସମଗ୍ର ମନୁଷ୍ୟର ଏହି ଜୟଯାତ୍ରାର ପୃଷ୍ଠଭୂମିରେ ସ୍ତୁପୀ ହୋଇ ରହିଯିବ ସବୁତକ ଅନ୍ଧକାର—ଆଉ ତା'ର ସମୀପବର୍ତ୍ତୀ ହୋଇ ରହିବ ସ୍ୱୋପାର୍ଜିତ ସମସ୍ତ ଆଲୋକ । ତା'ର ପଶ୍ଚିମ ପୃଷ୍ଠରେ ଚିରନ୍ତନ ସନ୍ଧ୍ୟା—ପୁଣି ତା'ର ପୂର୍ବ ସମ୍ମୁଖରେ ଚିରନ୍ତନ ଉଷା । ଗତି ତା'ର ସର୍ବଦା ପଶ୍ଚିମରୁ ପୂର୍ବକୁ ।

ଅଜ୍ଞାନ, ଅତ୍ୟାଚାର ଓ ଦୁର୍ଭାଗ୍ୟ ସଙ୍ଗେ ଲଢ଼ି ଲଢ଼ି ଯେଉଁ ବ୍ୟକ୍ତି ଜୟ ନ କରି ନଷ୍ଟଭ୍ରଷ୍ଟ ହୋଇଗଲା—ସେଥିରେ ମଧ୍ୟ ନିରାଶାକର, ଗ୍ଲାନିକର କିଛି ନାହିଁ । ସହୀଦରୂପେ ସେ ଅବଶିଷ୍ଟଙ୍କୁ ପ୍ରେରଣା ଦେବ । ନଷ୍ଟଭ୍ରଷ୍ଟତା ଯେତେବେଳେ ଦୁର୍ବଳ ଉପରକୁ ଆସେ ସେତେବେଳେ ସେ ସମାଜର କରୁଣା ଉଦ୍ରେକ କରେ ଓ ସହାନୁଭୂତିମାଧ୍ୟମରେ ସାମଗ୍ରିକ ପ୍ରତିରୋଧ ଲାଗି ପ୍ରତିହିଂସା ଜାଗ୍ରତ କରେ । ପୁଣି ମହତ୍ତ୍ୱମାନେ ମଧ୍ୟ ଯେତେବେଳେ ଅଜ୍ଞାନ, ଅତ୍ୟାଚାର ଓ ଦୁର୍ଭାଗ୍ୟର ଶିକାର ହୁଅନ୍ତି —ସେ ଦୃଶ୍ୟରେ ମଧ୍ୟ ସମଗ୍ର ମାନବତା "ମହତ୍ତ୍ୱ" ସମ୍ବନ୍ଧେ ଅଧିକ ସଚେତନ ଓ ଅଧିକ ସମ୍ପର୍କୀୟ ହୋଇ ଉଠେ । ଜୀବନକୁ ଆହୁରି ଗଭୀରଭାବେ ଦେଖିବାକୁ, ଜୀବନର ଭୟଙ୍କର ସମଗ୍ରତାକୁ ପ୍ରତ୍ୟକ୍ଷ କରିବାକୁ ଓ ଜୀବନର ତ୍ରୁଟି ବିଚ୍ୟୁତିକୁ ଲକ୍ଷ୍ୟ ରଖିବାକୁ, ସ୍ୱୀକାର କରିବାକୁ, ମହତ ବ୍ୟକ୍ତିମାନଙ୍କର ଆତ୍ମୋତ୍ସର୍ଗ ପରୋକ୍ଷରେ "ସମଗ୍ର ମାନବତା"କୁ ବାଧ୍ୟ କରିଦିଏ । ସବୁ କ୍ଲାସିକ ଟ୍ରାଜେଡ଼ୀ ଏଇ ଦୃଷ୍ଟିରୁ ଚିରନ୍ତନ ମହତ୍ ସାହିତ୍ୟରୂପେ ଆଦରଣୀୟ ହୋଇ ଆସିଛି ।

**କାରୁଣ୍ୟ-ବୋଧ :**

ଏ ଜୀବନ ଦୁଃଖପୂର୍ଣ୍ଣ ଏବଂ ସେହି ଆଦିମ, ମୌଳିକ ଓ ପ୍ରାଣିକ ଯନ୍ତ୍ରଣା ସଙ୍ଗେ ମନୁଷ୍ୟର ବାରମ୍ବାର ଭେଟ ହେବଇ ହେବ—ଏ ସତ୍ୟ ଶିଳ୍ପୀ ମାତ୍ରେଇ ଅନୁଭବ କରନ୍ତି—ମାତ୍ର ମହତ୍ତ୍ୱ ଶିଳ୍ପୀ ଆହୁରି ଏକ ମାନବୀୟ ପ୍ରତ୍ୟୟଭବରେ ସିଦ୍ଧ ହୋଇ କହେ ଯେ ଜୀବନ ତଥାପି ମୂଲ୍ୟବାନ—ତଥାପି ଆଶାଜନକ—ତଥାପି ସଂଗ୍ରାମ-ଉଦ୍‌ବୋଧକ—ଆମେ ଯନ୍ତ୍ରଣାର କାରଣମାନ ଜାଣିଛୁ—ଆହୁରି ବେଶୀ ଜାଣିବୁ ଓ ନିଶ୍ଚୟ ତାକୁ ପ୍ରତିରୋଧ କରିବୁ—ହଟାଇ ଦେବୁ ବା ରୂପାନ୍ତରିତ

କରନ୍ତୁ । ଏହି ଯନ୍ତ୍ରଣାର ମହତ୍ତ୍ୱ ଶିଳ୍ପୀଙ୍କୁ ବୁଝାଇ ଦିଏ—କେବଳ ମୁଁ ଦୁଃଖୀ ନୁହେ—ଦୁଃଖ ସମୁଦ୍ରରେ ଆମେ ସମସ୍ତେ ଭାସମାନ—ଏଠି ସାତୋଟିଯାକ ସମୁଦ୍ର ଲବଣାକ୍ତ—ପୁଣି, ଏକ ମୂଳରସର ପ୍ରସ୍ରବଣ ବହି ଚାଲିଛି—ଅନାଦି କାଳରୁ—"ଏକୋହି ରସ ଏକ କରୁଣ"—ଯାହା ଉପରେ ସ୍ଥାନ, କାଳ ଓ ପାତ୍ରର ବିଚ୍ଛୁରିତ ଆଲୋକଚ୍ଛଟା କେବଳ ବିଭିନ୍ନ ରଙ୍ଗର ଇନ୍ଦ୍ରଧନୁ-ମାୟା ସୃଷ୍ଟି କରେ ଏବଂ ଅନ୍ୟ ଆଠୋଟି ରସର ଆଭାସ ମାତ୍ର ଦିଏ; କିନ୍ତୁ ସେହି ଯନ୍ତ୍ରଣା-ସମୁଦ୍ରର ମର୍ମସ୍ଥଳରୁ, ସୁଦୂର ଅନନ୍ତ ବ୍ରହ୍ମାଣ୍ଡର ନାଭିକେନ୍ଦ୍ରରୁ ପ୍ରତିଧ୍ୱନିତ ହେଉଛି ଗୋଟାଏ ମାନବୀୟ କମ୍ବା ଦିବ୍ୟ ଆହ୍ୱାନ, ଯାହା ଆମର ଜ୍ଞାତ ବା ଅଜ୍ଞାତରେ ଖୁବ୍ ଉଲ୍ଲାସକର—ଖୁବ୍ ପ୍ରୀତିକର—ଯେଉଁ ଆହ୍ୱାନ ଆମକୁ ଆଗକୁ ଆଗକୁ ଡ଼ାକି ନେଉଛି—ଆମେ ଚାଲିଛୁ ପୁଲକ କଲୋଚ୍ଛ୍ୱାସରେ ବନ୍ଧୁର ପନ୍ଥା ଅନୁସରଣ କରି ସେହି ଆହ୍ୱାନର ଇଙ୍ଗିତରେ—ସବୁ ଯନ୍ତ୍ରଣାର ଅତୀତ ସେହି ସୁଦୂର ଲକ୍ଷ୍ୟ—ଯେଉଁଠି ନିତ୍ୟ ଉଚ୍ଚାରିତ ହେଉଛି ଏକ ସ୍ୱାହା ମନ୍ତ୍ର—"ସର୍ବେ ସୁଖିନଃ ଭବନ୍ତୁ......"

## ମୃତ୍ୟୁ-ଯନ୍ତ୍ରଣା ଓ କାରୁଣ୍ୟବୋଧ :

ପୂର୍ବରୁ ଅବିଦ୍ୟା ସମ୍ପର୍କୀୟ ଯନ୍ତ୍ରଣା ସାମାଜିକ ଏବଂ ମୃତ୍ୟୁଜନିତ ଯନ୍ତ୍ରଣା ଆତ୍ମିକ ବୋଲି କୁହା ଯାଇଛି । ଶିଳ୍ପୀର ବ୍ୟକ୍ତିଗତ ସାଧାରଣ ସତ୍ତା—ଯାହା ପ୍ରାତ୍ୟହିକ ଜୀବନର ଧରାବନ୍ଧା ଗତାନୁଗତିକ ଯୋଜନାବଦ୍ଧ ଦୁଃଖ-ସୁଖଭିତରେ ହଜି ଯାଇଥାଏ—ତାହା ଏହି ମୃତ୍ୟୁସମ୍ପର୍କୀୟ ଯନ୍ତ୍ରଣା ଭିତରେ ଏକ ନୂତନ ବୋଧଶକ୍ତି ଲଭିକରେ ଓ ନିଜକୁ ଫେରିପାଏ; କିନ୍ତୁ ଏହି ମୃତ୍ୟୁର ସ୍ୱରୂପ କଅଣ ? ଦୁର୍ଘଟଣାଜନିତ ମୃତ୍ୟୁ ନୁହଁ—ଅପମୃତ୍ୟୁ ନୁହଁ—ଦୈହିକପୀଡ଼ାର ଉପଶମକ ମୃତ୍ୟୁ ନୁହଁ—ଯେଉଁ ମୃତ୍ୟୁ ସ୍ୱାଭାବିକ, ସାର୍ବଜନୀନ, ସର୍ବକାଳୀନ—ପୁଣି ଯାହା ଏକାଧାରରେ ଜୀବନର ପ୍ରମାଣ ଓ ପ୍ରାମାଣିକ—ପ୍ରାଣୀର ଆକର୍ଷକ ହେଲେ ବି ଯେଉଁ ମୃତ୍ୟୁ ନିଜେ ଭାବବାଚକ—ସେହି "ମୃତ୍ୟୁଭାବ"କୁ ଶିଳ୍ପୀ ଯେତେବେଳେ ନିଜର ଚେତନାଭିତରେ ପ୍ରତ୍ୟକ୍ଷ କରେ—ସମ୍ମୁଖୀନ ହୁଏ । ଟିକିଏ ଦୂରରେ ଥାଇ ସେ ଦେଖାଦିଏ—ବନ୍ଧୁ ପରି ସେ କହିଦେଇ ଯାଏ ପ୍ରସ୍ତୁତ ଥାଅ—ମୁଁ ଆସିବି, ଏଇ କାଲି ସକାଳେ ଭୋର ଛଅଟାରେ—ବା ଏଇ ଆସନ୍ତା ଚଇତର ପୂର୍ଣ୍ଣିମା ଜନୀଥରେ—ବା ଆଜିଠାରୁ ପଚିଶ ବର୍ଷ ପରେ କୌଣସି ଏକ ବର୍ଷଣମୁଖର ଅମା ନିଶାର୍ଦ୍ଧରେ—ସେହି ମୃତ୍ୟୁ ସେତେବେଳେ ଭିବମସ୍ୱ ହେଲେ ବି ଶିଳ୍ପୀର ଅନ୍ତଶ୍ଚେତନାରେ ଉଦ୍‌ଘାଟିତ ହୋଇପଡ଼େ ତା'ର ସମସ୍ତ ମର୍ମ-ରହସ୍ୟ । ସେ ବନ୍ଧୁ ପରି ସମସ୍ତ ଦିଏ । ଛନ୍ଦ ପରି ବିଶ୍ରାମ ଦିଏ—ଅସ୍ଥିର କରାଏ ନାହିଁ—ସେହି ମୃତ୍ୟୁର ଚେତନା ଶିଳ୍ପୀ ଭିତରର ସୁପ୍ତ ସତ୍ତାକୁ ବା ଆତ୍ମାକୁ ସମସ୍ତ ଆବରଣ

ମୁକ୍ତିକର ଉନ୍ମୁଖ କରିଦିଏ—ଶିଳ୍ପୀ ନିଜକୁ ଦେଖେ ଓ ବିଶ୍ୱକୁ ଦେଖେ—ଗଭୀରତରଭାବେ ଦେଖେ—ଦେଖେ ସବୁ ଯନ୍ତ୍ରଣାର ଅନ୍ତଃସ୍ଥଳରେ ବେଦନା—ବେଦନାର ମର୍ମସ୍ଥଳରେ କାରୁଣ୍ୟ-ଅନନ୍ତ କାରୁଣ୍ୟ । ମହତ୍ ଶିଳ୍ପୀର ସମସ୍ତ ଶିଳ୍ପ ଏହି କାରୁଣ୍ୟାଶ୍ରୁରେ ନିର୍ମିତ, ଧୌତ ଓ ଶୌଚ । ସେତେବେଳେ ଯାଇ ତା'ର ଶିଳ୍ପଭିତରେ ସେହି ପରମ କାରୁଣିକ ବିଶ୍ୱଦେବଙ୍କର ପବିତ୍ର ବେଦନାଶ୍ରୁ ଝରିପଡ଼େ । ଏହି ବେଦନାଶ୍ରୁରେ ବିଧୌତ ହେଲେ ଯାଇ ବେଦନା ଓ ଆନନ୍ଦ ଏକରସ ହୋଇ ଉଠେ । ଅନ୍ୟଥା ନୁହେଁ ।

ପୃଥିବୀର ସମସ୍ତ ପ୍ରାଚୀନ ଓ ଆଧୁନିକ କାବ୍ୟ ମହାକାବ୍ୟମାନ ଅବିଦ୍ୟା ଓ ମୃତ୍ୟୁର ଯନ୍ତ୍ରଣା ଉପରେ ଆଧାରିତ ଓ ଶେଷରେ ଏହି କାରୁଣ୍ୟପର୍ଯ୍ୟାୟକୁ ଅତିକ୍ରାନ୍ତ ଉତ୍କ୍ରାନ୍ତ ।



# ତତ୍ତ୍ୱ ଓ ଲୀଳା-ସୂତ୍ର ଓ ବ୍ୟାଖ୍ୟା

ମହାରାଜା ପରୀକ୍ଷିତଙ୍କର ମୃତ୍ୟୁକାଳ ଆସନ୍ନ । ବ୍ରାହ୍ମଣ ଶାପରେ ତକ୍ଷକ-ଦଂଶନ ହେତୁ ତାଙ୍କର କାଳପ୍ରାପ୍ତି ହେବ, ଏହା ଧ୍ରୁବ ଜାଣି ସପ୍ତ ଦିବସ ବ୍ୟାପୀ ଅହୋରାତ୍ର ଭାଗବତ ଉତ୍ସବ ପାଳିତ ହେଲା । ବ୍ୟାସସୁତ ବ୍ରହ୍ମବିଦ୍ ଶୁକଦେବ ଶ୍ରୀମଦ୍ଭାଗବତ ଗାନ କଲେ । ଏହି ଉତ୍ସବରେ ବହୁ ବ୍ରାହ୍ମଣ, ମୁନିଋଷି, ପୁରୋହିତ ଓ ସାଧୁସନ୍ଥ ସମେତ ଅଗଣିତ ପ୍ରଜା ମଧ୍ୟ ଯୋଗ ଦେଇଥିଲେ ଓ ସପ୍ତଦିବସ ଅବଧି ଶୁକଦେବଙ୍କ ମୁଖନିର୍ଗତ ଭାଗବତ-ରସାମୃତ ପାନକରି ଧନ୍ୟ ହୋଇଥିଲେ ।

ଉତ୍ସବର ଶେଷ ଦିବସ । ଦିବାକର ଅସ୍ତାଚଳ ଚୂଡ଼ାକୁ ଅବଲମ୍ବନ କରିବାକୁ ଉଦ୍ୟତ ହେଉଅଛନ୍ତି । ଭାଗବତ ପାରାୟଣ ସମାପ୍ତ ହେଲା । ଗାନ ଶେଷକରି ବ୍ରହ୍ମର୍ଷି ଶୁକଦେବ ନୀରବ ଗାମ୍ଭୀର୍ଯ୍ୟରେ ଚତୁର୍ଦ୍ଦିଗକୁ ଦୃଷ୍ଟିପାତ କଲେ । ତାଙ୍କର ରସମେଦୁର କଲ୍ୟାଣ ଦୃଷ୍ଟି ପାତରେ ସଭାସଦ୍‌ବର୍ଗ ସାତ୍ତ୍ୱିକ ଅନୁଭବରେ ରୋମାଞ୍ଚିତ ହେଲେ । ଭାଗବତଲୀଳାର ମାଧୁର୍ଯ୍ୟ-ସାଗରରେ ସମସ୍ତେ ନିମଜ୍ଜିତ । ଆବ୍ରାହ୍ମଣ ଚଣ୍ଡାଳ ଏକ ଅଭୂତପୂର୍ବ ବ୍ରହ୍ମାନନ୍ଦ ସହୋଦର ତୁଲ୍ୟ ରସୋଲ୍ଲାସରେ ପୁଲକିତ ହୋଇ ଅଶ୍ରୁସିକ୍ତ ଦୃଷ୍ଟିରେ ଶୁକଦେବଙ୍କୁ ଚାହିଁ ରହିଲେ । ମାତ୍ର ଏହି ସାତ୍ତ୍ୱିକ ନୀରବତାର ପ୍ରଶାନ୍ତିକୁ କିଞ୍ଚିତ ଆହତକରି ସଭା ମଧ୍ୟରୁ ଜଣେ ଯୁବକ ବ୍ରହ୍ମଋଷି ଦଣ୍ଡାୟମାନ ହୋଇ ବିନୀତ ଭାବେ ପ୍ରଶ୍ନ କଲେ—

ହେ ବ୍ରହ୍ମର୍ଷି ! ଆପଣ ଅବ୍ୟକ୍ତ ତତ୍ତ୍ୱସ୍ୱରୂପ ନିର୍ଗୁଣ ପରଂବ୍ରହ୍ମଙ୍କ ସମ୍ବନ୍ଧେ ସପ୍ତଦିବସ ବ୍ୟାପୀ ଅହୋରାତ୍ର ଏଇ ଯେଉଁ ଅନର୍ଗଳ କାବ୍ୟଧାରା ପ୍ରବାହିତ କଲେ —ତହିଁରେ ଅବଗାହନ କରି ଆମ୍ଭେମାନେ କୃତାର୍ଥ ହୋଇଅଛୁ । ମାତ୍ର ବ୍ରହ୍ମଙ୍କ ସ୍ୱରୂପ ସମ୍ବନ୍ଧେ ଏହି ବ୍ୟାଖ୍ୟାନ କିଞ୍ଚିତ ପ୍ରଗଲ୍‌ଭତା ଦୋଷରେ ଦୁଷ୍ଟ ହେଲା କି ? ଏହି ବ୍ରହ୍ମବିଦ୍‌ମାନଙ୍କ ସମକ୍ଷରେ ଏହି ପ୍ରଗଲ୍‌ଭତା ସମୀଚୀନ ହେଲା କି ?

ଶୁକମୁନି ଈଷତ୍ ସ୍ମିତହାସ୍ୟ କରି କହିଲେ—

ହେ ଜିଜ୍ଞାସୁ ! ଆମ୍ଭେ ମାତୃଗର୍ଭରୁ ବ୍ରହ୍ମଜ୍ଞାନ ଲାଭ କରି ଧରିତ୍ରୀପୃଷ୍ଠରେ ଭୂମିଷ୍ଠ ହୋଇଥିଲୁ । ମାତ୍ର ତାହା ଥିଲା ଅବ୍ୟକ୍ତ ଜ୍ଞାନ । ତତ୍ପରେ ବ୍ରହ୍ମଚର୍ଯ୍ୟ ଅବସ୍ଥାରେ ଧ୍ୟାନସ୍ଥ ହୁଅନ୍ତେ ସେହି ଅବ୍ୟକ୍ତ ଜ୍ଞାନ ଦିନେ ଆମ୍ଭଙ୍କୁ ଗୋଟିଏ "ସୂତ୍ର" ରୂପରେ ଦୃଶ୍ୟ ହେଲା ଓ ଲବ୍ଧ ହେଲା । ଅନନ୍ତର ଆମ୍ଭେ ସେହି "ସୂତ୍ର"କୁ ସ୍ୱାଧ୍ୟାୟ କରି କରି ବହୁକାଳ ଅତିବାହିତ କଲୁ । ଆମ୍ଭର ଜନକ ମହର୍ଷି ବ୍ୟାସଦେବ ମଧ୍ୟ ସେହି "ସୂତ୍ର"କୁ ସ୍ୱାଧ୍ୟାୟ କରୁଥିଲେ । ତାଙ୍କର ବହୁ ସାଂସାରିକ ଅଭିଜ୍ଞତା ଉପରେ ସେ ତାହାକୁ ପ୍ରୟୋଗ କରି; ଦିନେ ଅକସ୍ମାତ୍ ସେହି ଅବ୍ୟକ୍ତ ବ୍ରହ୍ମର ବହୁବିଧ ବ୍ୟକ୍ତ ସ୍ୱରୂପକୁ ସେ ପ୍ରତ୍ୟକ୍ଷ କଲେ ଏବଂ ଆମ୍ଭ ସମ୍ମୁଖରେ ତାଙ୍କର ସେହି ପ୍ରତ୍ୟକ୍ଷାନୁଭୂତିକୁ ଅଶ୍ରୁଗଦ୍‌ଗଦ କଣ୍ଠରେ ଗାନ କଲେ । ତାହା ଶ୍ରବଣ କରନ୍ତେ ଆମ୍ଭର ବ୍ରହ୍ମନିଷ୍ଠ-ଚିତ୍ତ ବିଗଳିତ ହେଲା ଓ ପିତାଙ୍କ ମୁଖନିଃସୃତ ଲୀଳାମୃତ ମଧ୍ୟରୁ ସେହି ଅନନ୍ତ ଭୀଷଣ ବ୍ୟକ୍ତ ବ୍ରହ୍ମର ଏକ ଚମତ୍କାର ରୂପ ଆମ୍ଭର ଧ୍ୟାନ ମଧ୍ୟକୁ ପ୍ରବିଷ୍ଟ ହେଲା । ସେହି ରୂପକୁ ଧ୍ୟାନ କରୁ କରୁ ଆମ୍ଭର ମହାଭାବ ଉଦୟ ହେଲା । ଆମ୍ଭେ ଅନ୍ତର ମଧ୍ୟରେ ଏକ ଭୀଷଣ ଆଲୋଡ଼ନ ଅନୁଭବ କଲୁ । ଆମ୍ଭର ଯୋଗଯୁକ୍ତ ସ୍ଥିର ପ୍ରଶାନ୍ତ ଆତ୍ମାରେ ପ୍ରଥମେ ମହାନ୍ ବିସ୍ମୟାନୁଭୂତି, ତା'ପରେ ମହାନ୍ ଆହ୍ଲାଦ ଓ ଶେଷରେ ଏକ ମହାନ୍ ସ୍ଫୂର୍ତ୍ତିଯୁକ୍ତ ପ୍ରଗଳ୍‌ଭତାର ପ୍ରଗ୍ଦେଦନା ଜାଗ୍ରତ ହେଲା ।

ହେ ଅର୍ଥାର୍ଥୀ ! ରାଜା ପରୀକ୍ଷିତଙ୍କ ସମ୍ମୁଖରେ ଆମ୍ଭେ ଯେଉଁ ପ୍ରଗଳ୍‌ଭତା ପ୍ରଦର୍ଶନ କଲୁ, ତାହା ଦୋଷ ନୁହେଁ । କାରଣ, ଏବଂବିଧ ସ୍ଫୂର୍ତ୍ତିଯୁକ୍ତ ପ୍ରଗ୍ଦେଦନାମୟ ସାତ୍ତ୍ୱିକ-ଭାବ-ବିଳସିତ ପ୍ରଗଳଭତାକୁ ଆଜିଠାରୁ ଭାଗବତ ଭାଷାରେ "ସଂକୀର୍ତ୍ତନ" କୁହାଯିବ ଏବଂ ଅବ୍ୟକ୍ତ, ନିର୍ଗୁଣ, ଅରୂପ, ଅଦ୍ୱୟ ତତ୍ତ୍ୱସ୍ୱରୂପ ପରଂବ୍ରହ୍ମଙ୍କର ଏହି ସ୍ୱରୂପ ବର୍ଣ୍ଣନାକୁ "ଲୀଳା" କୁହାଯିବ । ଏଠାରେ ସମବେତ ମୁନି, ଜ୍ଞାନୀ ଓ ସର୍ବ-ସାଧାରଣଙ୍କ ଆବଶ୍ୟକ ମଙ୍ଗଳ ଦୃଷ୍ଟିରୁ ଆମ୍ଭେ ଏହି ଭାଗବତ ଲୀଳା କୀର୍ତ୍ତନ ଆରମ୍ଭ କରିଥିଲୁ ।

ଏତଦ୍ ଶ୍ରବଣେ ସେହି ଯୁବକ ବ୍ରହ୍ମଚାରୀ କୃତାଞ୍ଜଳି ପୂର୍ବକରେ ବିନୟ ପ୍ରକାଶ ପୂର୍ବକ କହିଲେ—

ମହାତ୍ମନ ! ବର୍ତ୍ତମାନ ସମସ୍ତ ବୁଝିପାରିଅଛୁ । ତେବେ ଏଠାରେ ସମବେତ ମୁନି ଓ ଜନସାଧାରଣଙ୍କ ମଧ୍ୟରୁ କେଉଁ କେଉଁମାନେ ଆପଣଙ୍କ ଭାଗବତ ପୁରାଣରୁ କି କି ପ୍ରକାର ଫଳ ଲାଭ କଲେ, ତାହା କହିବେ କି ?

ଶୁକ କହିଲେ—ହେ ଶୁଭାର୍ଥୀ ! ଯେଉଁ ତପସ୍ୱୀଗଣ ଆମ୍ଭର ବାମପାର୍ଶ୍ୱରେ ଉପବେଶନ କରି ଏହି ଭାଗବତ ଶ୍ରବଣ କରୁଥିଲେ ସେମାନେ ଏହି ଲୀଳାକୀର୍ତ୍ତନକୁ

ବ୍ରହ୍ମସୂତ୍ରର ବ୍ୟାଖ୍ୟା ମନେ କରି ଧନ୍ୟ ହେବେ । କାରଣ ଗୁରୁଗୃହରୁ ସଦ୍ୟାଗତ "ସୂତ୍ରଧାରୀ" ଏହି ଦ୍ୱିଜ ବ୍ରହ୍ମଚାରୀଗଣ ସଂସାରକୁ ପ୍ରବେଶ କରିବା ପୂର୍ବରୁ ସେହି ସୂତ୍ରଗୁଡ଼ିକର ଅର୍ଥ-ବ୍ୟାଖ୍ୟା ଜାଣିବାକୁ ଚାହୁଁଥିଲେ, ସେମାନେ ତାହା ପାଇଛନ୍ତି । ଏମାନଙ୍କର "ହୃଦୟଶୁଦ୍ଧି" ହୋଇଅଛି ।

ଆମ୍ଭର ଦକ୍ଷିଣ ପାର୍ଶ୍ୱରେ ଉପବିଷ୍ଟ ଗାର୍ହସ୍ଥାଶ୍ରମରେ ପରିଶୁଦ୍ଧ ଧର୍ମାତ୍ମା ଜନଗଣ ଦୁସ୍ତର ସଂସାର ସମୁଦ୍ରର ବହୁ ଲୀଳା-ତରଙ୍ଗ ଦର୍ଶନ କରି, ତହିଁରେ ସ୍ନାତ ହୋଇ ଓ ତାଡ଼ିତ ହୋଇ ସେଗୁଡ଼ିକର ଅର୍ଥ ସୂତ୍ର ଜାଣିବାକୁ ଚାହୁଁଥିଲେ । ସେମାନଙ୍କର ମନୋବାଞ୍ଛା ପୂର୍ଣ୍ଣ ହୋଇଅଛି । ଏମାନଙ୍କର "ଚିତ୍ତଶୁଦ୍ଧି" ଘଟିଅଛି ।

ଆମ୍ଭର ସମ୍ମୁଖସ୍ଥ ଏହି ବୃଦ୍ଧ ଓ ଅଭିଜ୍ଞ ବ୍ରହ୍ମବାଦୀଗଣ ବ୍ରହ୍ମସୂତ୍ର ସଙ୍ଗେ ଭାଗବତ ବ୍ୟାଖ୍ୟାକୁ ମିଳାଇ ପରୀକ୍ଷା କରିଅଛନ୍ତି । ତତ୍ତ୍ୱ ଓ ଲୀଳାର ଅଙ୍ଗାଙ୍ଗୀ ଭାବକୁ ସ୍ୱୀକାର କରିଅଛନ୍ତି । ସେମାନଙ୍କର "ଆତ୍ମଶୁଦ୍ଧି" ଘଟିଅଛି ।

ଶେଷରେ, ଆମ୍ଭର ପୃଷ୍ଠ ଦେଶରେ ଉପବେଶନ କରିଥିବା ଏହି ଚଣ୍ଡାଳ ଓ ପାପାତ୍ମାଗଣ ଏହି ଲୀଳାକୀର୍ତ୍ତନ ଶ୍ରବଣ କରି ତା'ର ସୂତ୍ର ରୂପ ବା ବ୍ୟାଖ୍ୟା ରୂପ କୌଣସିଟିକୁ ହୃଦୟଙ୍ଗମ ନ କରି ମଧ୍ୟ "ହରିବୋଲ" ଶବ୍ଦରେ ମହା କୋଳାହଳ ଓ ଉନ୍ମତ୍ତ ଉଦ୍ଦଣ୍ଡ ନୃତ୍ୟ ପୂର୍ବକ ବହୁବାର ଭୂମି ଉପରେ ଗଡ଼ାଗଡ଼ି ହେଉଅଛନ୍ତି ।

ଯୁବକ ବ୍ରହ୍ମଚାରୀ ପୁନଶ୍ଚ ପ୍ରଶ୍ନ କଲେ—ଏହା କିପରି ସମ୍ଭବ ହେଉଅଛି ? ଏହି ଅଜ୍ଞାନ ପାଷାଣ୍ଡଗଣ ମଧ୍ୟ କିପରି ଏଥିରେ ଭାବାବିଷ୍ଟ ହେଉଅଛନ୍ତି ?

ଶୁକ କହିଲେ—ବତ୍ସ ! ଏହିଁ ଇନ୍ଦ୍ରିୟ-ସର୍ବସ୍ୱ-ପାପାତ୍ମା ମୂଢ଼ଗଣ ଭାଗବତର ଶବ୍ଦଗତ ଧ୍ୱନିର ଶକ୍ତିକୁ ସେମାନଙ୍କର ଶ୍ରବଣେନ୍ଦ୍ରିୟରେ ଗ୍ରହଣ କରି ଏବଂବିଧ ଉନ୍ମତ୍ତ ସାତ୍ତ୍ୱିକାବସ୍ଥା ପ୍ରାପ୍ତ ହୋଇଅଛନ୍ତି । ଏହା ସେମାନଙ୍କର ଇନ୍ଦ୍ରିୟକୁ ଶୋଧିତ କରିଅଛି । ସେମାନେ "ଇନ୍ଦ୍ରିୟ-ଶୁଦ୍ଧ" ପ୍ରାପ୍ତ ହୋଇଅଛନ୍ତି ।

ତରୁଣ ବ୍ରହ୍ମଚାରୀ ପୁନର୍ବାର ପ୍ରଶ୍ନ କଲେ—

ପୂଜ୍ୟପାଦ ! ମହାରାଜା ପରୀକ୍ଷିତଙ୍କର କି ଉପକାର ହୋଇଅଛି ?

ଶୁକ କହିଲେ—ପରୀକ୍ଷିତ ମାତୃଗର୍ଭରେ ଉତ୍ତରାଙ୍କ ଗର୍ଭରେ) ଅବସ୍ଥାନ କରୁଥିଲାବେଳେ ଭଗବତ୍ କୃପାଲାଭ କରିଥିଲେ । ବର୍ତ୍ତମାନ ମୃତ୍ୟୁ କାଳରେ ମଧ୍ୟ ସେ ଭଗବତ୍ କୃପା ଲାଭ କଲେ । ସେ "ଭଗବତ୍ କୃପାପାତ୍ର" ହୋଇ ଅଛନ୍ତି ଏବଂ ଜନ୍ମ ଓ ମୃତ୍ୟୁର ରହସ୍ୟକୁ ଭେଦ କରି ତା'ର ଅତୀତାବସ୍ଥାକୁ ପ୍ରାପ୍ତ ହୋଇଅଛନ୍ତି ।

ବ୍ରହ୍ମଗ୍ରହୀ ଉତ୍ସାହିତ ହୋଇ ପୁନର୍ବାର ପ୍ରଶ୍ନ କଲେ—

ହେ ମହାତ୍ମନ ! ଏତଦ୍ୱାରା ଆପଣ କପରି ଉପକୃତ ହୋଇଅଛନ୍ତି ?

ଶୁକଦେବ ହାସ୍ୟାପ୍ଳୁତ କଣ୍ଠରେ ଉତ୍ତର ଦେଲେ—

• ବତ୍ସ ! ନିର୍ଗୁଣ ବ୍ରହ୍ମଙ୍କର ସଗୁଣ ଲୀଳାକୁ ସ୍ୱତଃସ୍ଫୂର୍ତ୍ତି ଶବ୍ଦ ଓ ବାକ୍ୟ ମଧ୍ୟରେ ବର୍ଣ୍ଣନା କରି ଆମ୍ଭେ ଶବ୍ଦମାନଙ୍କର ଗୁଣ ଓ ଶକ୍ତିକୁ ବୋଧ କରିଅଛୁ । ସମସ୍ତ ମହା-ପ୍ରାଣ ଓ ହୀନପ୍ରାଣ ବର୍ଣ୍ଣମାନଙ୍କର ଶାବ୍ଦିକ ବିନ୍ୟାସ ଜନିତ ବିଚିତ୍ର କୋଲାହଳ ମଧ୍ୟରେ ବ୍ରହ୍ମଙ୍କର ଧ୍ୱନିମୟ ରୂପକୁ ପ୍ରତ୍ୟକ୍ଷ କରିଅଛୁ ଏବଂ ଅବଶେଷରେ ଏକ ସାତ୍ତ୍ୱିକ-ଅବସାଦ ମଧ୍ୟରେ ବିଳସିତ ହେଉଅଛୁ ।

ଏହି ସମସ୍ତ ଶ୍ରବଣକରି ଯୁବକ ବ୍ରହ୍ମଗ୍ରହୀଙ୍କର ସମସ୍ତ କୌତୂହଳ ଶାନ୍ତ ହେଲା । ସେ କିଛିକ୍ଷଣ ନୀରବ ରହିଲେ । ମାତ୍ର ପୁନର୍ବାର ତାଙ୍କ ଅନ୍ତରରେ ଏକ ପ୍ରଶ୍ନ ଉତ୍ଥିତ ହେଲା । ସେ ଦଣ୍ଡାୟମାନ ହୋଇ ପୁନର୍ବାର ବିନୀତ ସ୍ୱରରେ ପ୍ରଶ୍ନ କଲେ—

ହେ ଦେବାତ୍ମା ! ହେ ଗୁରୁ ! ଏତଦ୍ଦ୍ୱାରା ମୋର ବା କି ଉପକାର ହୋଇଅଛି ?

ଶୁକଦେବ ପ୍ରସନ୍ନ ଚିତ୍ତରେ ଉତ୍ତର ଦେଲେ—

ତୁମ୍ଭେ ବ୍ରହ୍ମଙ୍କର "ନିତ୍ୟ ଜିଜ୍ଞାସାମୟ ଓ ନିତ୍ୟ ସମାଧାନମୟ" ରୂପକୁ ପ୍ରତ୍ୟକ୍ଷ କରିବାରେ ସମର୍ଥ ହୋଇପାରିଛ ।

ଯୁବକ ବ୍ରହ୍ମଗ୍ରହୀ ଶୁକଦେବଙ୍କର ମୁଖାରବିନ୍ଦକୁ ବିସ୍ମୟ ଆହ୍ଲାଦ-ଦୃଷ୍ଟିରେ ଅବଲୋକନ କରି ନୀରବ ହେଲେ ।

× × × ×

– ଏତେବେଳଯାଏ ଆମ୍ଭେମାନେ ମହାରାଜ ପରୀକ୍ଷିତଙ୍କ ରାଜସଭାରେ ମହାମୁନି ଶୁକ ଓ ବ୍ରହ୍ମଗ୍ରହୀଙ୍କ ମଧ୍ୟରେ ପ୍ରଶ୍ନୋତ୍ତର ଶୁଣୁଥିଲୁଁ । କଳ୍ପନାପ୍ରସୂତ ଏଇ ରୂପକଟି "ତତ୍ତ୍ୱ ଓ ଲୀଳା"—ଏହାର ଏକ ବ୍ୟାଖ୍ୟାନ ମାତ୍ର । ବ୍ୟାଖ୍ୟାନଟି 'ଲୀଳା' ଆଉ ତା ମଧ୍ୟରେ ରହିଛି "ତତ୍ତ୍ୱ" । ଏବେ ଆମେ ଲୀଳାରୁ ତତ୍ତ୍ୱ ଆଡ଼କୁ ବା ବ୍ୟାଖ୍ୟାରୁ ସୂତ୍ର ଆଡ଼କୁ ଯାଇ ଯାହା ଉପଲବ୍ଧି କଲୁ, ଯେଉଁ ସିଦ୍ଧାନ୍ତରେ ଉପନୀତ ହେଲୁ, ତା' ହେଲା—

ସତ୍ୟ ଏକ । ମାତ୍ର ତାକୁ ଦୁଇ ଭାବରେ ଉପଲବଧ କରିହୁଏ— ବ୍ୟକ୍ତଭାବେ ଓ ଅବ୍ୟକ୍ତଭାବେ । କାରଣ, "ସତ୍ୟ" ଏକାଧାରରେ ବ୍ୟକ୍ତ ଓ ଅବ୍ୟକ୍ତ । ଅବ୍ୟକ୍ତରେ ଏହା ଏକ, ମାତ୍ର ବ୍ୟକ୍ତରେ ବହୁ । ବହୁ ବସ୍ତୁ ରୂପରେ ପ୍ରକାଶିତ ହୋଇ ତାହା ବାସ୍ତବ ରୂପେ ପ୍ରତିଭାତ ହୁଏ । କିନ୍ତୁ ବ୍ୟକ୍ତ ମଧ୍ୟରେ ଓ କ୍ରିୟା ମଧ୍ୟରେ ବିକଶିତ ହୋଇ ତାହା ହୁଏ ବ୍ୟକ୍ତ । ଏହି ବ୍ୟକ୍ତ ରୂପ ପ୍ରତି ମୁହୂର୍ତ୍ତରେ ସୃଷ୍ଟ ହେଉଛି ଓ ବିନଷ୍ଟ ହେଉଛି । ମାତ୍ର ଅବ୍ୟକ୍ତ ହେଉଛି ନିତ୍ୟ ଓ ତେଣୁ ଅବିନାଶୀ । ବ୍ୟକ୍ତ ମଧ୍ୟରେ ଏହି ଅବ୍ୟକ୍ତ ସ୍ଥିର ଓ ଅଦୃଶ୍ୟଭାବେ ରହିଛି ଏବଂ ଅବ୍ୟକ୍ତ ମଧ୍ୟରେ ବି ଏହି ବ୍ୟକ୍ତର ଅନନ୍ତ ସମ୍ଭାବନା ଅସ୍ଥିର ଓ ଅଦୃଶ୍ୟଭାବରେ "ନିତ୍ୟ ପ୍ରବୃଦ୍ଧ ବର୍ତ୍ତମାନ" ହୋଇଅଛି ।

ଯେଉଁମାନେ "ସତ୍ୟ"ର ଏହି "ବ୍ୟକ୍ତାବ୍ୟକ୍ତ" ରୂପକୁ ପ୍ରତ୍ୟକ୍ଷ କରିଅଛନ୍ତି ଯଥାର୍ଥରେ ସେମାନେ ତତ୍ତ୍ୱଦର୍ଶୀ ।

ଯେ ଏକାଧାରରେ ଜ୍ଞାନୀ ଓ ଭକ୍ତ, ସେ ଏହି ସୃଷ୍ଟିର ଯାବତୀୟ ପ୍ରକାଶ ମଧ୍ୟରେ ସେହି ସ୍ଥିର ଅବ୍ୟକ୍ତ ବ୍ରହ୍ମକୁ ପ୍ରତ୍ୟକ୍ଷ କରି ତାକୁଇ ଧ୍ୟାନ କରେ ଓ ଭଜନ କରେ । ମାତ୍ର ଯେ କର୍ମୀ ଓ ଭକ୍ତ, ସେ ସେହି ସ୍ଥିର, ନିତ୍ୟ ଅବ୍ୟକ୍ତ ବ୍ରହ୍ମ ମଧ୍ୟରେ ଅନନ୍ତ ଲୀଳା-ସମ୍ଭାବନାମୟ ନିତ୍ୟପ୍ରବୃଦ୍ଧ-ବର୍ତ୍ତମାନ—ଭଗବତ୍ ଶକ୍ତିକୁ ପ୍ରତ୍ୟକ୍ଷ କରି ଭଜନ କରେ ।

କିନ୍ତୁ ଯେଉଁ ସାଧକ କର୍ମ, ଜ୍ଞାନ ଓ ଭକ୍ତି ଏହି ତ୍ରିମାର୍ଗର ସମନ୍ୱୟ ସାଧନାରେ ସିଦ୍ଧ, ସେ ଅବ୍ୟକ୍ତରେ ଅବସ୍ଥାନ କରି ବ୍ୟକ୍ତ ମଧ୍ୟରେ ପ୍ରକାଶମାନ ହୁଅନ୍ତି । ତାଙ୍କର ସାଧନ ହୁଏ ଦ୍ୱୈତଭିତରେ, ମାତ୍ର ସିଦ୍ଧି ଆସେ ଅଦ୍ୱୈତ ମଧ୍ୟରେ । ତାଙ୍କର ମତ ଅଦ୍ୱୈତ; କିନ୍ତୁ ପନ୍ଥା ଦ୍ୱୈତ । ସେ ଦ୍ୱୈତ ଓ ଅଦ୍ୱୈତ ଉଭୟରେ ସହଜ ଭାବରେ ଅବସ୍ଥାନ ଓ ବିଳାସ କରନ୍ତି ।

ଅବ୍ୟକ୍ତ ଓ ବ୍ୟକ୍ତ ନିତ୍ୟ ପରସ୍ପର-ଆକର୍ଷିତ ହେଉଅଛନ୍ତି । ପରଂବ୍ରହ୍ମ ଏକ କାଳରେ ସଙ୍କୋଚିତ ଓ ପ୍ରସାରିତ ହେଉଅଛନ୍ତି । ଏକ କାଳରେ ସଂଘଟିତ ଏଇ ବିରୋଧାତ୍ମକ-କ୍ରିୟା-ସମନ୍ୱିତ "ସତ୍ୟ"କୁ ଯେ ଉପଲବ୍ଧି କରିଅଛନ୍ତି, ସେ ଯଥାର୍ଥରେ ଦ୍ରଷ୍ଟା ।

ଏକ ପରମତତ୍ତ୍ୱକୁ ଜ୍ଞାନୀମାନେ ବ୍ରହ୍ମରୂପରେ, ଯୋଗୀମାନେ ପରମାତ୍ମାରୂପେ ଏବଂ ଭକ୍ତଗଣ ଭଗବାନରୂପେ ପ୍ରାପ୍ତ ହୁଅନ୍ତି । ମାତ୍ର ପ୍ରକୃତରେ ଏହି ତତ୍ତ୍ୱ ଅଦ୍ୱୟ ।

ତନ୍ତ୍ର ହେଉଛି ସୂତ୍ର ଏବଂ ତନ୍ତ୍ରର ବ୍ୟାଖ୍ୟା ହେଉଛି ଲୀଳା । ଜ୍ଞାନୀ ତନ୍ତ୍ରରେ ଅଧିଷ୍ଠିତ ହୁଏ, ଯୋଗୀ ସୂତ୍ରରେ ନିମଜ୍ଜିତ ହୁଏ ଏବଂ ଭକ୍ତ ବ୍ୟାଖ୍ୟା ବା ଲୀଳାରେ ବିଳସିତ ହୁଏ । କିନ୍ତୁ ସାଧକ ମାନେ ହିଁ ତନ୍ତ୍ରର ସୂତ୍ର ଓ ବ୍ୟାଖ୍ୟା ଉଭୟଙ୍କୁ ଉପଲବ୍ଧି କରିବା ଉଚିତ୍ ନୁହେଁ କି ?

ଏବଂ ଏହି ଦୃଷ୍ଟିରୁ କାବ୍ୟ-ସାଧକମାନଙ୍କ ପକ୍ଷରେ ବି ଏହି ତନ୍ତ୍ର ଓ ଲୀଳା ଏବଂ ସୂତ୍ର ଓ ବ୍ୟାଖ୍ୟାର ମର୍ମ ବୃତ୍ତି ପ୍ରୟୋଗରେ ସାର୍ଥକ ହେବା ଉଚିତ । କବିର ପ୍ରତିଟି କାବ୍ୟଭିତରେ ତନ୍ତ୍ର ଓ ଲୀଳାର ଏହି ଦ୍ୱୈତାଦ୍ୱୈତ ପରିପ୍ରକାଶ ସଂଘଟିତ ନ ହେଲେ—ସେ କାବ୍ୟ ହୁଏତ କେବଳ ବ୍ୟାଖ୍ୟା ବିରହିତ ସୂତ୍ର—ନତୁବା ସୂତ୍ର ବିରହିତ ବ୍ୟାଖ୍ୟାରେଇ ପର୍ଯ୍ୟବସିତ ହୋଇ ପଡ଼ିବ । ଏହି କଥାଟି ମନରେ ରହିଲେ —ଅବୋଧ କବିତା ବା ଦୁର୍ବୋଧ ଗଳ୍ପମାନଙ୍କ ହାତରୁ ବହୁ ସୁପାଠକ ରକ୍ଷାପାଇ ପାରନ୍ତେ । ଲେଖକ ଓ ପାଠକ ଉଭୟେ ସ୍ମରଣ ରଖିବା ଉଚିତ୍ ଯେ କୌଣସି ଭଲ କବିତା, ଗଳ୍ପ ବା ନାଟକ ଏକାଧାରରେ ଇନ୍ଦ୍ରିୟଗ୍ରାହ୍ୟ, ଚିତ୍ତଗ୍ରାହ୍ୟ ଓ ଆତ୍ମଗ୍ରାହ୍ୟ ହେବାର ସଦ୍‌ଗୁଣତକ ଅର୍ଜନ କରିଥାଏ । ଏଥିରୁ ଗୋଟିଏ କମ୍ ହେଲେ—ତାହା ଉତ୍କୃଷ୍ଟତାର ପର୍ଯ୍ୟାୟରୁ ସେହି ପରିମାଣରେ ଅଧୋଗାମୀ ହୋଇପଡ଼େ ।



# ତ୍ରିକୋଣ ଦୃଷ୍ଟି

ମନୁଷ୍ୟର ସଭ୍ୟତାର ଇତିହାସ ଯେମିତି ତା'ର ସ୍ଥିତି ଓ ବିକାଶ ଲାଗି ବିରୋଧୀ ଶକ୍ତି ସଙ୍ଗେ ଏକ ନିରବଚ୍ଛିନ୍ନ ସଂଗ୍ରାମର କାହାଣୀ—ସେମିତି ସେହି ସଂଗ୍ରାମରେ ସଂଗ୍ରାମୀ ବୀରମାନଙ୍କର ଅନୁଭୂତିର ଆତ୍ମଲିପି ହେଉଛି ତା'ର ସାହିତ୍ୟ। ଅବଶ୍ୟ ଏହି ବିରୋଧୀ ଶକ୍ତି କେବେ ତା'ର ପରିବେଶଗତ କେବେ ବା ତା'ର ସ୍ୱଗତ —ଅର୍ଥାତ୍ ଅନ୍ତର୍ଗତ।

ମାତ୍ର ଏହି ବିରୋଧୀଶକ୍ତି ତା'ର ପରିବେଶ ଭିତରେ ଥାଉ ବା ନିଜ ଭିତରେ ଥାଉ—ତାକୁ ଖୋଜି ବାହାର କରିବା ଲାଗି—ପ୍ରଥମେ ନିଜ ଭିତରେ ସେ ଏକ ଆତ୍ମ ସଚେତନ ଦ୍ରଷ୍ଟା, ବୋଦ୍ଧା ସ୍ରଷ୍ଟା ଓ ଅନୁମନ୍ତାର ସତ୍ତାକୁ ଏକ ଶୁଭ ମୁହୂର୍ତ୍ତରେ ଆବିଷ୍କାର କରି ପାରିଥିଲା। ଏହି ସତ୍ତା ତା'ର ସ୍ଥିତିରେ ଯେପରି ସ୍ୱତନ୍ତ୍ର—ତା'ର କ୍ରିୟାରେ ମଧ୍ୟ ସେହିପରି ନିର୍ଲିପ୍ତ। ସେହେତୁ ଘଟଣାଗୁଡ଼ିକର ବାମ ବା ଦକ୍ଷିଣ ଗତି, ଊର୍ଦ୍ଧ୍ୱ ବା ଅଧୋଗତି, ସମ୍ମୁଖ ବା ପଶ୍ଚାତ୍‌ଗତି—ସବୁପ୍ରକାର ଗତିବୃତ୍ତିକୁ ଟିକିଏ ଦୂରରୁ ରହି ସେ ବିଗ୍ଭର କରିପାରିଲା। ସେଇ ବିଗ୍ଭରରେ ସେ ବୁଝିଲା—ଯାହାକିଛି ଧାରଣ କରେ—ରକ୍ଷାକରେ—ଅଗ୍ରସର କରାଏ—ତାହାହିଁ ଧର୍ମ ବା ସତ୍ୟ ଏବଂ ଯାହା ତା'ର ବିପରୀତ ତାହା ଅଧର୍ମ ବା ଅସତ୍ୟ—। ଏହି ସତ୍ୟ ଓ ଅସତ୍ୟ —ବା ଏହି ଧର୍ମ ଓ ଅଧର୍ମକୁ ସେ ନିଜ ଭିତରେ ବ୍ୟକ୍ତିଗତ ଭାବେ ଓ ନିଜ ବାହାରେ ସମଷ୍ଟିଗତ ଭାବେ ବିଗ୍ଭର ବିଶ୍ଳେଷଣ କରି ବୁଝିଛି ଓ ତଦନୁଯାୟୀ ନିଜକୁ ପୁଣି ସମାଜକୁ ଗଢ଼ି ଆସିଛି। ତା'ର ଏଇ ଗଠଣ-ପ୍ରକ୍ରିୟାରେ ତାକୁ ସର୍ବଦା ଏହି ଅଧର୍ମ ସଙ୍ଗେ ଲଢ଼େଇ କରିବାକୁ ପଡ଼ିଛି।

ଏହି "ଅଧର୍ମ" ବା "ଅସତ୍ୟ" ପାଶ୍ଚାତ୍ୟ କଳ୍ପନାରେ "ସୟତାନ" ଓ ଭାରତୀୟ କଳ୍ପନାରେ "ଅସୁର" ବୋଲି ପ୍ରମୂର୍ତ୍ତ ହୋଇଛି। ପ୍ରକାଶ ଥାଉକି— ଦୁଇଟିଯାକ ଶବ୍ଦ ଗୁଣବାଚକ ଥାଆନ୍ତି କଳ୍ପନାରେ—ମାତ୍ର ଘଟଣାରେ ବ୍ୟକ୍ତିବାଚକ

ହୋଇ ଉଠନ୍ତି । ଗଳ୍ପ ନାଟକ ବା କାବ୍ୟରେ ନାୟକ ସ୍ବର୍ଗେ ପ୍ରେମ ପ୍ରତିଷ୍ଠା କରନ୍ତି—ଶାନ୍ତି ପ୍ରତିଷ୍ଠା କରନ୍ତି ବା ଧର୍ମ ପ୍ରତିଷ୍ଠା କରନ୍ତି । ମାତ୍ର ସଇତାନ ବା ଅସୁର ତାର ବିରୁଦ୍ଧାଚରଣ କରେ । ସଂଗ୍ରାମ ହୁଏ । ଟ୍ରାଜେଡ଼ୀରେ ନାୟକର ମୃତ୍ୟୁ ହୁଏ ବା ଧର୍ମ ବଞ୍ଚେ—ଆହୁରି ଶକ୍ତିଶାଳୀ ହୋଇ ବଞ୍ଚେ । କମେଡ଼ିରେ ନାୟକ ଜିତେ—ବଞ୍ଚେ ଏବଂ ତାର ବଞ୍ଚିବା ଯୋଗୁଁ କେବଳ ଧର୍ମ ବଞ୍ଚେ; ଟ୍ରାଜେଡ଼ୀରେ "ଧର୍ମ" ନାୟକକୁ ଆଶ୍ରୟ କରିଥିଲେ ମଧ୍ୟ—ଏହା ନାୟକ ନିରପେକ୍ଷ ହୋଇ ବଞ୍ଚିରହେ । ଅର୍ଥାତ୍ ଶୁଦ୍ଧ ପ୍ରେମ ପାଇଁ ନାୟକ ମୃତ୍ୟୁ ବରଣ କଲେ ମଧ୍ୟ ଶୁଦ୍ଧ ପ୍ରେମ ବା ନୀତି ପୃଥିବୀ-ମାନସରୁ ଅର୍ଥାତ୍ ପାଠକ ମାନସରୁ ତିରୋହିତ ହୁଏନାହିଁ । ଏହି ପରିଣତି ସତ୍ୟ ଓ ଧର୍ମର ବିପ୍ଳବରେ ଯୁଗେ ଯୁଗେ ଦେଖାଯାଇଛି ।

ମାତ୍ର କମେଡ଼ୀରେ ସତ୍ୟ ବା ଧର୍ମ ନାୟକକୁ ହିଁ କେବଳ ଅବଲମ୍ବନ କରି ରହେ । ତାର ତେଣୁ ସାର୍ବଜନୀନ ବା ସର୍ବକାଳୀନ ଆବେଦନ ରହି ପାରେନା । ସେଥିଲାଗି ଟ୍ରାଜେଡୀର ସତ୍ୟ ଅଧିକ ଜୀବନ୍ତ, ଅଧିକ ଜୀବିତ ଓ ଅଧିକ ଲୋକଙ୍କର ସମ୍ବେଦନ ଅର୍ଜନ କରିଥାଏ ।

କିନ୍ତୁ ଆମର ପ୍ରାଚୀନ କାବ୍ୟ ମହାକାବ୍ୟମାନଙ୍କରେ ରାମରାବଣ ଯୁଦ୍ଧ, ଯୁଧିଷ୍ଠିର ଦୁର୍ଯୋଧନ ଯୁଦ୍ଧ ବା ଚଣ୍ଡୀ ମହିଷାସୁର ଯୁଦ୍ଧକୁ ଏଇ ଅର୍ଥରେ କମେଡ଼ୀ କହି ହେବନାହିଁ । କାରଣ ଏଗୁଡ଼ିକ କମେଡ଼ୀ ବା ଟ୍ରାଜେଡୀର ପରିସୀମାକୁ ଆପଣାର ଶକ୍ତି ଗୁଣ ଓ ଗାମ୍ଭୀର୍ଯ୍ୟରେ ଅତିକ୍ରମ କରି ଯାଇଛନ୍ତି । ଈଶ୍ବର ପୁତ୍ର ଯୀଶୁ ଖ୍ରୀଷ୍ଟଙ୍କର କ୍ରୁଶାରୋହଣ ଯେପରି ଏକ ସାଧାରଣ ନାୟକର ବ୍ୟକ୍ତିଗତ ବା ତତ୍କାଳୀନ ସତ୍ୟପାଇଁ ସଂଗ୍ରାମର ମୃତ୍ୟୁବରଣ ନୁହେଁ—ସେହିପରି ଚଣ୍ଡୀ, ରାମ ବା ଯୁଧିଷ୍ଠିରଙ୍କର ବିଜୟ ମଧ୍ୟ ଏକ ସାଧାରଣ ତତ୍କାଳୀନ ସତ୍ୟ ପ୍ରତିଷ୍ଠାରେ ବିଜୟ ନୁହେଁ । କାରଣ ଖ୍ରୀଷ୍ଟ, କୃଷ୍ଣ, ରାମ ଓ ଯୁଧିଷ୍ଠିର ଆଦି ଚରିତ୍ରଗଣ ହେଉଛନ୍ତି ମହାଜନ—ସେମାନେ ମହାନାୟକ । ସେମାନଙ୍କ ଦୁଃଖ ଭୋଗରେ ଆମ ଆଖିରୁ ଯେଉଁ ଅଶ୍ରୁ ବହେ—ତାହା ସହାନୁଭୂତିର ଅଶ୍ରୁ ନୁହେଁ—ତାହା ଗଭୀର କୃତଜ୍ଞତା-ପୂର୍ଣ୍ଣ ବେଦନାର ଅଶ୍ରୁ । ସେମାନଙ୍କ ବିଜୟ ଯେମିତି ଉତ୍ସାହଜନକ—ପରାଜୟ ମଧ୍ୟ ସେମିତି ସଂଗ୍ରାମ-ଉଦ୍ଦୀପକ । ଏହା ବ୍ୟତୀତ ଏହି ସବୁ ଚରିତ୍ର ପ୍ରଥମେ ବ୍ୟକ୍ତି-ବାଚକତାରୁ ଆରମ୍ଭ କରିଥିଲେ ବି କ୍ରମେ ଆମ ମନରେ ବିମୂର୍ତ୍ତିଭାବ ବା ରୂପକରେ ପରିଣତ ହୋଇ ଗଲେଣି । ସେଥିପାଇଁ ସବୁଯୁଗର "ସତ୍ୟ"କୁ ଆମେ ସେମାନଙ୍କ ଉପରେ ଆରୋପ କରି—ସେମାନଙ୍କୁ ଗ୍ରହଣକରି ନେଇପାରୁ ଓ ସେ ଚରିତ୍ରଗୁଡ଼ିକ ମଧ୍ୟ ସେଥିଲାଗି ଅତ୍ୟନ୍ତ ସମ୍ପ୍ରସାରଣଶୀଳ । ତେଣୁ ଏମାନଙ୍କ ସମ୍ପର୍କରେ ବିଜୟ ବା ପରାଜୟ ସର୍ବତ୍ର ଧର୍ମର ପ୍ରତିଷ୍ଠା ।

କିନ୍ତୁ ଏହି ଭୂମିକାଟିର ମୂଳ ଉଦ୍ଦେଶ୍ୟ କଣ ? ମୂଳକଥା ଏକ ସାହିତ୍ୟିକ ସଙ୍କଟ । ଏକ ସାହିତ୍ୟିକ ଜିଜ୍ଞାସା । କଣ ଯୁଗ ଯୁଗ ଧରି ଏହି ସଂଗ୍ରାମ ଚାଲିଥିବ ? ପ୍ରେମ ସଙ୍ଗେ ହିଂସାର—ସତ୍ୟ ସଙ୍ଗେ ମିଥ୍ୟାର—ସରଳତା ସଙ୍ଗେ କପଟତାର ? ସାମ୍ୟ ସଙ୍ଗେ ବୈଷମ୍ୟର ? ନା ଏ ସଂଗ୍ରାମର ଇତି ଅଛି ? ସବୁଦିନ ପାଇଁ ଏଇ ପୁନରାବର୍ତ୍ତିତ ସଂଗ୍ରାମରୁ କ'ଣ ଆଉ ମୁକ୍ତି ମିଳି ପାରେ ନା ? ଆମେ କଣ କେବଳ କୁରୁସଭାରେ ଯାଜ୍ଞସେନୀଙ୍କୁ ବିବସନ କରି ଚାଲିଥିବା—ପୁଣି କୁରୁକ୍ଷେତ୍ରରେ ଦୁଃଶାସନର ଭୁଜ ଉପାଡ଼ି ତାର ରକ୍ତପାନ କରି ଏଇ ବୈରୀ-ଶୋଧ ନେଉଥିବା ? ଆମ ଲଲାଟରେ କ'ଣ ଚିରଦିନ ଲାଗି ଏତେ ବଡ଼ ହିଂସା ଓ ଏତେ ବଡ଼ ପ୍ରତିହିଂସା କିଏ ଲେଖି ଦେଇଛି ? ଆମ କପାଳରେ କ'ଣ ଚିରଦିନ କପଟପାଶା ଓ ଚିରଦିନ ବନବାସ ? ଆମ ମସ୍ତକରେ କ'ଣ ଯୁଗେ ଯୁଗେ କଣ୍ଟାର ମୁକୁଟ ଓ ଯୁଗେ ଯୁଗେ ଏହି ନିଷ୍ଠୁରତା ଲାଗି ପ୍ରାୟଶ୍ଚିତ ଓ ଅଶ୍ରୁମୋଚନ ? ଆଉ ଏହି ସତ୍ୟଟିକୁ ହିଁ କେବଳ ନାନାଦି ଛନ୍ଦ, ଢଙ୍ଗ, ଆଙ୍ଗିକ ଓ ଶୈଳୀରେ ବାରମ୍ବାର ଆମେ ବିବୃତ କରି ଚାଲିଥିବୁ ଆମ ସାହିତ୍ୟରେ ? ଆଉ ଏଥିରୁ ସାହିତ୍ୟର ମୁକ୍ତି ନାହିଁ ? ମୁକ୍ତିର ଉପାୟ ନାହିଁ ?

ଅଛି, ଆଗ ଆମର ଜୀବନ ଏଥିରୁ ମୁକ୍ତ ହେବା ପାଇଁ ପ୍ରସ୍ତୁତ ହୋଇଯାଉ—ସାହିତ୍ୟରେ ମଧ୍ୟ ଏଥିଲାଗି ଧ୍ରୁବ ବାଟ ଫିଟିଯିବ । କିନ୍ତୁ ଜୀବନକୁ ଏଥିରୁ କିପରି ମୁକ୍ତି ମିଳିବ ?

ସେଥିପାଇଁ ବାଟ ଖୋଜା ମଧ୍ୟ ଚାଲିଛି । ଏହି ବିଷାକ୍ତ ବୃତ୍ତର ଆବର୍ତ୍ତିନତାରୁ ମୁକ୍ତିର ଉପାୟ ନିଜ ନିଜ ବାଟରେ ପୃଥିବୀର ମନୀଷୀମାନେ ଦେଇଯାଇଛନ୍ତି ।

ବୁର୍ଜୋୟା ନୀତିବାଦୀମାନେ ସୟତାନ ବା ଅସୁରର ଭାବକୁ "ପାପ" ବୋଲି ଆଖ୍ୟାତ କରିଛନ୍ତି ଓ ଏହି 'ପାପ' ଲାଗି ସିଧା ସଳଖ ଦାୟୀ କରିଛନ୍ତି 'ବ୍ୟକ୍ତି'କୁ ଏବଂ ବ୍ୟକ୍ତିକୁ ଫାଶି ବା ପ୍ରାୟଶ୍ଚିତ ତଲବ କରି ସେମାନେ ଏହାର ସମାଧାନ ଆଶା କରିଛନ୍ତି ।

ମନସ୍ତାତ୍ତ୍ୱିକମାନେ ଏହାକୁ କହିଛନ୍ତି—"ବିକୃତି" ଏବଂ ଏଥିଲାଗି ପାରିବାରିକ ଓ ସାମାଜିକ ବିଧି ବ୍ୟବସ୍ଥାକୁ ଦାୟୀ କରିଛନ୍ତି ଏବଂ ମନସ୍ତାତ୍ତ୍ୱିକ ଉପାୟରେ ଏହାର ନିରାକରଣ କରିବାକୁ ବସିଛନ୍ତି ।

ବସ୍ତୁତାନ୍ତ୍ରିକ ସମାଜବାଦୀମାନେ ଏହାକୁ ଉତ୍ପାଦନର ବିଷମବଣ୍ଟନ ଏବଂ ଶୋଷଣ ବା ଲୁଣ୍ଠନ ନାମ ଦେଇଛନ୍ତି ଏବଂ ଶ୍ରେଣୀ-ସଂଘର୍ଷ-ଜନିତ ଆର୍ଥନୀତିକ ସାମ୍ୟବାଦହିଁ ଏଥିରୁ ବର୍ତ୍ତିବାର ବାଟ ବୋଲି କହିଛନ୍ତି ।

ଏବଂ ଆଧ୍ୟାତ୍ମବାଦୀମାନେ ଉପରୋକ୍ତ ସମସ୍ତ ମତବାଦକୁ ଆଂଶିକଭାବେ ସମର୍ଥନ କଲେ ମଧ୍ଯ ସେତିକରେ ସନ୍ତୁଷ୍ଟ ନୁହନ୍ତି । ସେମାନଙ୍କ ମତରେ "ପ୍ରମାଦ" ବା "ପାପ" ମୂଳତଃ ଅଧ୍ୟାତ୍ମ୍ୟସମସ୍ୟା ଏବଂ ମୃତ୍ୟୁଭଳି ଓ "ମୃତ୍ୟୁ" ରୂପରେ ଏହା ଆଦ୍ୟ କାଳରୁ ମନୁଷ୍ୟର ପିଛୁ ଧରିଛି । ପାପ ପ୍ରମାଦ ଓ ଦୁଃଖ ଏକ ବିଷୟ । ଯେତେକାଳ ପର୍ଯ୍ୟନ୍ତ ମନୁଷ୍ୟ ପ୍ରଥମତଃ ବ୍ୟକ୍ତିଗତ ଭାବେ ଓ ସେଥିଲାଗି ସାମାଜିକ ଭାବେ ଦେହ, ପ୍ରାଣ ଓ ମନର ଶୃଙ୍ଖଳା ଭିତରେ ଛନ୍ଦି ହୋଇ ରହିଥିବ ଓ ସେଇମାନଙ୍କ ଦାବୀ ଏବଂ ଷଡ଼ରିପୁକୁ କ୍ରୀତଦାସ ଭଳି ବ୍ୟକ୍ତିଗତ ଭାବେ ଓ ସାମାଜିକ ଭାବେ ପାଳନ କରି ଚାଲିଥିବ—ସେତେଦିନଯାଏ ଦୁଃଖ, ପ୍ରମାଦ ବା ପାପ ନିଶ୍ଚୟ ବର୍ତ୍ତିଥିବ । ବ୍ୟକ୍ତି ଉପରେ ଓ ତା'ର ପୃଥିବୀ ଉପରେ ସର୍ବ ସ୍ତରରେ ଆତ୍ମାର ରାଜତ୍ୱ ପ୍ରତିଷ୍ଠିତ ନ ହେଲାଯାଏ ଦୁଃଖ ଓ ପାପରୁ ମୁକ୍ତି କାହିଁ ? "ପାପ" ଲୁଚି ରହିଛି ଆମ "ଦେହ"ର ଜଡ଼ତା, ଅବାଧତା ଓ ଅମନାଯ୍ୟତା ଭିତରେ —ଆମ "ପ୍ରାଣ"ର ସର୍ବଗ୍ରାସୀ କ୍ଷୁଧିତ ପ୍ରବୃତ୍ତି ଭିତରେ ଓ ଆମ "ମନ"ର ନାନାବିଧ ଅଯଥା ଜଟିଳ କ୍ରିୟା ପ୍ରତିକ୍ରିୟା ଭିତରେ । "ଅହଙ୍କାର" ରୂପରେ ସେ ଏହି ତ୍ରିଭୂମିରେ ତ୍ରିପାଦ ସ୍ଥାପନ କରି ଆମକୁ ତ୍ରିତାପଗ୍ରସ୍ତ କରୁଅଛି । ତେଣୁ "ଅହଙ୍କାର"ର ମୂଳୋଚ୍ଛେଦନ ଆଗ ବ୍ୟକ୍ତିସ୍ତରରେ ସାଧନ କରିବାକୁ ପଡ଼ିବ । ଦେହକୁ ପ୍ରାଣମୟ—ପ୍ରାଣକୁ ମନୋମୟ ଓ ମନକୁ ବୋଧମୟ କରିପାରିଲେ ମନୁଷ୍ୟ "ଆତ୍ମା"ର ସନ୍ଧାନ ପାଇବ ଏବଂ ଏଇ ଆତ୍ମାର ଆଲୋକରେ "ପାପ" ବା ଦୁଃଖର ମୂଳତତ୍ତ୍ୱ "ଅହଂକାର"କୁ ଆଲୋକିତ ବା ରୂପାନ୍ତରିତ କରିବାକୁ ପଡ଼ିବ । ଏତିକି ହୋଇପାରିଲେ ଯାଇ ବ୍ୟକ୍ତି ଓ ସମାଜ ପାପ ବା ପ୍ରମାଦରୁ ସର୍ବ କ୍ଷେତ୍ରରେ ସର୍ବତୋଭାବେ ମୁକ୍ତ ହୋଇପାରିବେ ।···

ପାପ ବା ପ୍ରମାଦର ନିରାକରଣ ଦିଗରେ ଯେଉଁ କେତୋଟି ପନ୍ଥା ନିର୍ଦ୍ଦେଶ କରାଗଲା ସେଥିରୁ ବୁର୍ଜୋଆ ନୀତିଶାସ୍ତ୍ର ବର୍ତ୍ତମାନ ଏକବାର ଅଚଳ । କାରଣ ତାହା କେବଳ ଦୋଷୀକୁ ମାରିବା ଲାଗି ବ୍ୟଗ୍ର "ଦୋଷ"ର ମୂଳ ଖୋଜିବା ବା ତା' ଉପରେ କିଛି କ୍ରିୟା କରିବାର ଦାୟିତ୍ୱ ତାହା ନିଏ ନାହିଁ । କେବଳ ମନସ୍ତାତ୍ତ୍ୱିକ ଓ ବସ୍ତୁତନ୍ତ୍ରୀ ସମାଜବାଦ ଏଇ କାର୍ଯ୍ୟରେ ସକ୍ରିୟ ଓ ଜୀବନ୍ତ ରହିଅଛି; କିନ୍ତୁ ଏହି ଦୁଇ ଦୃଷ୍ଟିକୁ ବ୍ୟବହାର କରି ମଧ୍ଯ ଆଉ ଏକ ଅଧିକ ଶକ୍ତିଶାଳୀ ଦୃଷ୍ଟିରୂପେ ବା ତୃତୀୟ ନୟନ ରୂପେ ଆଧ୍ୟାତ୍ମନୀତିକୁ ମଧ୍ଯ ଗ୍ରହଣ କରାଯାଇପାରେ । ଯେତେଦୂର ଜଣା ପଡ଼ୁଛି—ଏଇ ତିନୋଟି ନୟନର ମିଳନ ଦୃଷ୍ଟିପାତରେ ହିଁ ପୃଥିବୀର ଭାଗ୍ୟ ପରିବର୍ତ୍ତିତ ହୋଇପିବ ।

କିନ୍ତୁ ଏକକାଳୀନ ଏହି ତିନୋଟି ନୟନର ଅଧିକାରୀ ହେବାର ଯୋଗ୍ୟତା କେବଳ ସୁସାହିତ୍ୟିକର ହିଁ ରହିଛି ଏବଂ ତା'ର ଆବଶ୍ୟକତା ମଧ୍ଯ ବର୍ତ୍ତମାନ ସବୁ-

ଠାରୁ ବେଶୀ ହୋଇ ପଡ଼ିଲାଣି । କାରଣ ବର୍ତ୍ତମାନର ସାହିତ୍ୟିକ ଉପରେ ସମାଜ ଓ ଜୀବନ ଯେଉଁ ଗୁରୁଦାୟିତ୍ୱ ଲଦି ଦେଲାଣି ଓ ସାହିତ୍ୟିକଠାରୁ ଯେତେ ବେଶୀ ଆଶା କଲାଣି—ତାହା ଆମର ମହାକାବ୍ୟ ଯୁଗକୁ ଛାଡ଼ିଦେଲେ—ଆଉ କୋଉ ଯୁଗରେ ଘଟିନାହିଁ ।

ସେଥିପାଇଁ ଆମର ଆଧୁନିକ ଗଳ୍ପ, ଉପନ୍ୟାସ ଓ ନାଟକାଦିରେ 'ସମାଜ ବା ଜୀବନର ବହୁବିଧ ବାସ୍ତବ ସମାସ୍ୟା ଓ ଘଟଣାର ଉପସ୍ଥାପନା ଭିତରେ ଲେଖକର ନିଜସ୍ୱ ଉଚ୍ଚାରଣ ହିଁ ବର୍ତ୍ତମାନ ସବୁଠାରୁ ବଡ଼ ଗୁରୁତ୍ୱପୂର୍ଣ୍ଣ ବିଷୟ ହୋଇ ଉଠିଛି । ଆଉ କୋଉ ସାହିତ୍ୟିକ ବା ଏଇ ନିଜସ୍ୱ ଉଚ୍ଚାରଣ କରିବାକୁ ସାହସ କରିବ—ଯେ ଉପରୋକ୍ତ ଢନୋଟି ଦୃଷ୍ଟିପଥର ଅଧିକାରୀ ନ ହୋଇଥିବ ?



# ସାହିତ୍ୟିକର ନେତୃତ୍ୱ

କୌଣସି ଦେଶ ବା ସମାଜରେ ଯେତେବେଳେ ଗୋଟିଏ ସନ୍ଧିସନ୍ଧ ମୁହୂର୍ତ୍ତ ଆସେ—ଅର୍ଥାତ୍ ସମାଜକୁ ଠିକଣା ବାଟରେ ଚଳାଇବାର ନେତୃତ୍ୱ-ଦାନରେ ଯେତେବେଳେ ଧର୍ମନେତା ଓ ରାଜନୀତିକ ନେତାମାନେ ବିଫଳ ହୁଅନ୍ତି—ସେତେବେଳେ ସାହିତ୍ୟିକର ନେତୃତ୍ୱପାଇଁ ସମାଜ ଅପେକ୍ଷା ରଖେ । ସବୁ ଦେଶର ଓ ସବୁକାଳର ଏଇ ସନ୍ଧିସନ୍ଧ ମୁହୂର୍ତ୍ତରେ ଉତ୍କୃଷ୍ଟ ସାହିତ୍ୟ ସବୁ ସୃଷ୍ଟି ହୋଇଯାଇଛି ଓ ଉଚ୍ଚକୋଟୀର ସାହିତ୍ୟିକମାନେ ସମାଜ ଓ ଦେଶର ସଙ୍କଟଗୁଡ଼ିକର ଦାୟିତ୍ୱ ନିଜେ ଗ୍ରହଣ କରିଛନ୍ତି ।

ବର୍ତ୍ତମାନ କିନ୍ତୁ ଭାରତୀୟ ସାହିତ୍ୟକ୍ଷେତ୍ରକୁ ଦୃଷ୍ଟି ଦେଲେ ନିରାଶ ହେବାକୁ ପଡ଼ୁଛି । ଆମେ ଏପରି କିଛି ଲେଖା ଲେଖୁଛୁ କି—ଯାହା ବର୍ତ୍ତମାନର ଅର୍ଥନୀତି-ଦାୟଗ୍ରସ୍ତ ଓ ରାଜନୀତି ଶୋଷଣାପିଷ୍ଟ ମ୍ରିୟମାଣ ସମାଜକୁ ଯେକୌଣସି ଉପାୟରେ ହେଲେ ଉଦ୍‌ବୁଦ୍ଧ କରିପାରିବ ? ଆପଣା ଖିଆଲରେ ଭଲ କବିତାଟିଏ, ନାଟକଟିଏ ବା ଉପନ୍ୟାସଟିଏ ହୁଏତ ଲେଖାଯାଉଛି—ମାତ୍ର ବ୍ୟକ୍ତି ଓ ସମାଜକୁ ପଥ ପ୍ରଦର୍ଶନ କରିବାରେ—ତା'ର ସଙ୍କଟ ମୋଚନ କରିବାରେ—ଅନ୍ତତଃପକ୍ଷେ ସଙ୍କଟ ସମ୍ପର୍କରେ ତାକୁ ସଚେତନ କରାଇ ଦେବାରେ—ବା ତାକୁ ସଙ୍କଟ ମୋଚନର ସ୍ୱପ୍ନ ଦେଖାଇବାରେ ସାହିତ୍ୟିକର ଯେଉଁ ଗୁରୁଦାୟିତ୍ୱ—ତାହା ଆମେ ବହନ କରୁଥାଉଁ କି ? ଆତ୍ମ-ସମୀକ୍ଷଣ ଫଳରେ ଯଦି ଆମଭିତରୁ ଉତ୍ତର ଆସେ "ନାଁ" ବୋଲି—ତେବେ ତା'ର କାରଣ କ'ଣ ହୋଇପାରେ ?

ଅସଲ କାରଣ ହେଲା-ସାହିତ୍ୟିକ-ବ୍ୟକ୍ତିତ୍ୱର ଅଭାବ । କ'ଣ ଓ କିପରି ସେ ବ୍ୟକ୍ତିତ୍ୱ ? ସାହିତ୍ୟିକର ବ୍ୟକ୍ତିତ୍ୱ ଗଠିତ ହୁଏ—ଏକ "ଆତ୍ମ-ଦହନ" ଭିତରୁ । ଜୀବନ ସଙ୍ଗେ ସେ ଯେତେ ପରିମାଣରେ ନୈଷ୍ଠିକ ସମ୍ପର୍କ ରଖିପାରେ ତା'ର ଦହନ ସେତେ ବେଶୀ । ଏ "ଜୀବନ" ପୁଣି—ସ୍ୱୟଂ ଲେଖକ, ସମାଜ, ପ୍ରକୃତି ଓ ଈଶ୍ୱର

—ଏଇ ସ୍ପୃହେଷି ଆୟତନ ସଙ୍ଗେ ସଂଯୁକ୍ତ । ଜୀବନର ଅତି ନିଗୂଢ଼ ସମସ୍ୟାମାନ ଏଇ ସ୍ପୃହେଷି ଆୟତନକୁ ସ୍ପର୍ଶ କରି ଉଦ୍‌ଭବ ହୋଇଥାନ୍ତି ।

ଇତର ବ୍ୟକ୍ତିଙ୍କ ଭଳି ଆମେ ଯଦି କେବଳ ଏକ ଅହଂକେନ୍ଦ୍ରିକ ସ୍ଥୂଳ ଆବେଦନର ଦାସ ହୋଇପଡୁ—ଯଦି ଆମର ସମସ୍ତ ପ୍ରବଣତା କେବଳ ଆତ୍ମଖ୍ୟାତି ଓ ଧନ-ଲିପ୍‌ସାକୁ ନେଇ ମାତି ରହେ—ତେବେ ଆମ ଲେଖା ଭିତରେ ଉଦ୍ଧୃତି ଉପାଦାନମାନ ରହିବ—କିମ୍ବା ଏକ ଦୁର୍ବୋଧ ଖିଆଲି ଶବ୍ଦ ଜାଲ ବା ବାଗାଡ଼ମ୍ବର —ବା ଉଦ୍ଦେଶ୍ୟହୀନ, ଚିନ୍ତାହୀନତରଳ, ଲଘୁ ଅନୁଭବ ପ୍ରବଣତାରେ ଆମର ଲେଖା କାହା ପକ୍ଷରେ ସତ୍ୟ ହେବ ନାହିଁ, ଶିବ କି ସୁନ୍ଦର ବି ହେବ ନାହିଁ ।

ଉକ୍ତ ସ୍ତର ଆୟତନ ସ୍ପଷ୍ଟ ଜୀବନ ହିଁ "ସତ୍ୟ" । ସେ "ସତ୍ୟ" ଯେତେ ଦୂରରେ ଥାଉ ବା ଯେତେ ଗଭୀରରେ ଥାଉ —ଆମକୁ ସଂଯୁକ୍ତ ରହିବାକୁ ହେବ ସେହି ବୃହତ୍ତମ ସତ୍ୟ ସଙ୍ଗେ କଲ୍ୟାଣ ସଙ୍ଗେ । ଆମର ଏହି ସଂଯୋଗ ଯେତିକି ଘନିଷ୍ଠ ହେବ ଆମ ଭିତରେ "ଦହନ" ହେବ ସେତିକି ପ୍ରଜ୍ୱଳନମୟ । ଆଉ ଏଇ ପ୍ରଜ୍ୱଳନ ଭିତରୁ ଯାହା ଆତ୍ମପ୍ରକାଶ କରିବ—ତାହାହିଁ ହେବ "ଯାଜ୍ଞସେନୀ-ବାଣୀ" । ଏ ବାଣୀ ଦେବ, ନିର୍ବାସନର ନିଃସଙ୍ଗପୀଡ଼ାରେ ସଖୀଜନୋଚିତ, ମାତୃଜନୋଚିତ ଆଶ୍ୱାସନା, ଆଶ୍ରୟ, ସେବା । ପୁଣି ଏ ବାଣୀ ମଧ୍ୟ "ଅସତ୍ୟ" ଓ "ଅମଙ୍ଗଳ" ବିରୁଦ୍ଧରେ ସଂଗ୍ରାମର ପ୍ରଚ୍ଛେଦନା ଦେଇ ପାରିବ ।

ସାହିତ୍ୟିକ ଋଷି ନହୋଇ ପାରେ—ମାତ୍ର ତା'ର ଜୀବନଚର୍ଯ୍ୟା ହେବ ଅଧ୍ୟାତ୍ମ-ପ୍ରଣୋଦିତ । ଅହଂସର୍ବସ୍ୱ ନୁହେଁ । ତେବେ ଯାଇ ତା'ର ଅନ୍ତରରୁ ନିଃସୃତ ହେବ ଜୀବନ-ବେଦ, ସହଜରେ ସ୍ୱାଭାବିକ ସ୍ୱରରେ ବ୍ରହ୍ମାଙ୍କର ଶ୍ୱାସବାୟୁ ଭଳି । ସେ ହେବ ନିର୍ଭୀକ, ସ୍ପଷ୍ଟଭାଷୀ ଓ ସମର୍ଥ ଦ୍ରଷ୍ଟା-ନେତା ।

ବାଲ୍ମୀକି, ଗେଟେ, ମିଲ୍‌ଟନ୍, ଦାନ୍ତେ, ଟଲଷ୍ଟୟ, ଗର୍କୀ ଓ ବର୍ଣ୍ଣାଡ୍‌ସଙ୍କ ଠାରୁ ଆରମ୍ଭକରି ଆମର ଶାରଳା, ଜଗନ୍ନାଥ, ଉପେନ୍ଦ୍ର ଓ ରବୀନ୍ଦ୍ରନାଥଙ୍କ ପର୍ଯ୍ୟନ୍ତ ସର୍ବତ୍ର ଏହି ସତ୍ୟହିଁ ପ୍ରମାଣିତ ହୋଇଛି । ଲେଖକର ଲେଖନୀ-ନିଃସୃତବାଣୀ ତା'ର ଅହଂପୂର୍ତ୍ତିର ମନ୍ତ୍ର ନୁହେଁ—କି ଲେଖକର ଜୀବନ ମଧ୍ୟ ନୁହେଁ ତା'ର ଅହଂପୂର୍ତ୍ତିର ଯନ୍ତ୍ର ।

କ୍ଷୁଦ୍ର ଦୀପାଳିଟିର ନମ୍ରନୀଳ ଶିଖାଟି ଭିତରେ ବି ମହାଦୀପର ମହାଲୋକର ପ୍ରଜ୍ୱଳିତ ସ୍ୱପ୍ନ ଥରିଥରି ହେଲେ ମଧ୍ୟ ଜଳିଉଠେ । ଆମର ଆଦର୍ଶ ଓ ସ୍ୱପ୍ନ ଅନ୍ତତଃ ଏହାହିଁ ରହୁ, ଯା'ଫଳରେ ଆମର ଲେଖା ପ୍ରଚୁର ସମ୍ଭାବନାର ଉଦ୍‌ବୋଧନାରେ ପରିପୂର୍ଣ୍ଣ ହୋଇ ଉଠିବ ଓ ଆମେ ଠିକ୍ ସମୟରେ ନିଜକୁ ଓ ସମାଜକୁ ବାଣୀମୟ ନେତୃତ୍ୱ ଦେଇ ପାରିବୁ ।



# କବିତା ପାଠୋତ୍ସବ

ବିଭିନ୍ନ ସାହିତ୍ୟିକ ସଭା ସମିତିରେ କବିତାବୃତ୍ତି ଆଜିକାଲି ଏକ ବିଶେଷ କାର୍ଯ୍ୟକ୍ରମ ରୂପେ ଗୃହୀତ ହେଲାଣି । ଏହା ଏକ ଶୁଭ ଲକ୍ଷଣ-ନିଃସନ୍ଦେହ । ସାହିତ୍ୟର ବିଭିନ୍ନ ବିଭାଗ ମଧ୍ୟରେ ଅଭିଜାତ ହେଲା କବିତା ବିଭାଗ । ସଂକ୍ଷିପ୍ତତା, ତୀକ୍ଷ୍ଣତା, ପ୍ରଚୁର ଆବେଗ - ପୁଣି ଛନ୍ଦ ଓ ଶବ୍ଦ ପ୍ରୟୋଗ ମାଧ୍ୟମରେ ସ୍ୱଳ୍ପ ସମୟ ଭିତରେ ଦ୍ରୁତ ଭାବ-ସଂଚରଣ କ୍ଷମତା କବିତାର ହିଁ ରହିଛି ବେଶୀ—ତା' ସେ ଗମ୍ଭୀର ଅମିତ୍ରାକ୍ଷର ଚତୁର୍ଦ୍ଦଶପଦୀ ହେଉ — ବା କୁଳୁକୁଳୁନାଦିନୀ କଦାଚିତ୍କ୍ଷିପ୍ର — କଦାଚିତ ଶିଥିଳ ତରଳଗତି ପାହାଡ଼ିଆ କେଦାର ହେଉ — ବା ହେଉ ପଛେ ଅତ୍ୟାଧୁନିକ ମୁକ୍ତଗତି ଗଦ୍ୟଛନ୍ଦର କବିତାଟିଏ ।

ଏହାଛଡ଼ା ମଧ୍ୟ ସାହିତ୍ୟ ସଭାରେ ସାହିତ୍ୟରୁ ପ୍ରତ୍ୟକ୍ଷ ସ୍ୱାଦ ଦେଇଥାଏ ଏଇ କବିତା । ଗଳ୍ପ ଉପନ୍ୟାସ ନାଟକାଦିଙ୍କ ଭାଗ୍ୟରେ ଏହା ଅସମ୍ଭବ । ଏହା ଶ୍ରୋତା-ମାନଙ୍କ ମନରେ ଭାବଶାବଳ୍ୟ ବିଳାସ-ଜନିତ ଆନନ୍ଦ ସୃଷ୍ଟି କରେ ।

ମାତ୍ର ଯାହା ଦେଖାଯାଉଛି—ଅନେକ ସଭାରେ କବିତାବୃତ୍ତି ଏକ ବିରକ୍ତିକର ଅତ୍ୟାଗ୍ରହରେ ପରିଣତ ହେଲାଣି । ତା'ର ଅନେକ କାରଣ ଭିତରେ ପ୍ରଥମ କାରଣ ହେଲା — ପଠିତ କବିତାର ନିର୍ବାଚନ ସମସ୍ୟା । ଯେ କେହି ଦୁଇଧାଡ଼ି କବିତା ଲେଖିଲେ—ସେ ବ୍ୟାକୁଳ ହେଉଛନ୍ତି—ସୁଧୀଜନସମାବୃତ ସାହିତ୍ୟସଭାରେ ଅନ୍ୟାନ୍ୟ ପ୍ରତିଷ୍ଠିତ କବିମାନଙ୍କର ଉଚ୍ଚାଙ୍ଗ କବିତାମାନଙ୍କ ସହ ସେ କିପରି ସେହି ଅବକାଳୀନ ଲିଖିତ ବାଳସୁଲଭ କବିତାଟି ପାଠ କରିବେ । ଏ ଅନ୍ଧ ବ୍ୟାକୁଳତା ବାଳବୃଦ୍ଧଯୁବା ସମସ୍ତଙ୍କଠାରେ ପରିଲକ୍ଷିତ ହେଉଛି । ଫଳରେ କବିତା ପାଠୋ-ତ୍ସବରେ ଥରେ ଥରେ ସତୁରି, ଅଶୀ ଏପରିକି ଶତାଧିକ କବିତା-ଗଛବାଣ ଫୁଟା ମହୋତ୍ସବ ଚାଲିଛି । ଏଣେ ଚାଲିଛି କବିତାବୃତ୍ତି—ସଭାରେ ତେଣେ ଶ୍ରୋତାମାନେ ଅନ୍ୟମନସ୍କ, ବିରକ୍ତ ଓ ଅପସୃୟମାନ । ଗୋଟିଏ କବିତାକୁ ଶୁଣି ତା'ର ପ୍ରଭାବ

ଭିତରେ ବିଳସିତ ହେଉ ନ ହେଉଣୁ—ଆଉ ଏକ କବିତାପାଠର ମାଡ଼-ତା'ପରେ ଆଉଗୋଟେ, ତା'ପରେ ପୁଣି ଗୋଟେ – ଏ ଯେମିତି କବିତାର ବୋମାମାଡ଼ ବା ଗଛବାଣ ଫୁଟା ମହୋତ୍ସବ ।

ଦ୍ୱିତୀୟ କାରଣ ହେଉଛି—କବିତା ଆବୃତ୍ତିର ଅପାରଗତା । କବିତାକୁ ଶୁଣିକରି ଅନୁଭବ କରିବାକୁ ହେଲେ—ତାହା ଏକାନ୍ତ ଭାବେ ଆବୃତ୍ତି-ନିର୍ଭର ହେବାକୁ ବାଧ୍ୟ । ଅନେକ କବିଙ୍କର ଆବୃତ୍ତି ଏପରି ନିସ୍ପୃହ, ପ୍ରାଣହୀନ, ଯତିବିରାମ-ହୀନ, ଆବେଗସଞ୍ଚାରାକ୍ଷମ—କଣ୍ଠସ୍ୱରହୀନ ହୋଇ ପଡ଼େ ଯେ—ମନରେ ସନ୍ଦେହ ହୁଏ—ଏ କବିତାର କବି ଏଇଟିକି ? କିମ୍ବା ଏ କବିତା, ଏ ସ୍ୱର ଆଉ ଏ କବି ଏକ ଠିକ ?

ଆମର ଗୃହ ବା ବିଦ୍ୟାଳୟମାନଙ୍କରେ ମଧ୍ୟ କବିତାବୃତ୍ତି ଏକ ଶିକ୍ଷଣୀୟ ବିଷୟ ବୋଲି କେହି ମନେ କରନ୍ତି ନାହିଁ । କଲେଜପାଠ୍ୟ "ମହାଯାତ୍ରା"ର ଆବୃତ୍ତି ହୁଏ "ଶବକଥା କହେ" ଭାବରେ "ଉଠ କଙ୍କାଳ—ଜାଗ କଙ୍କାଳ" ଆବୃତ୍ତି ଶୁଣିଲେ ମନେହେବ—ସତେକି କେହି ଆମ୍ବାବାଇଗ୍ରସ୍ତ – ବା ଅଣ୍ଠାବାଇଗ୍ରସ୍ତ ବୃଦ୍ଧ ମରିବା ଲାଗି ଛଟପଟ ହେଉଛି ।

ଅନ୍ୟସବୁ ଶିକ୍ଷଣୀୟ ବିଷୟଭଳି କବିତାବୃତ୍ତି ବାଲ୍ୟକାଳରୁ ଶିକ୍ଷା-କରିବା ଉଚିତ । ଅଭିଭାବକ ଓ ଶିକ୍ଷକ ଅଧ୍ୟାପକଗଣ ଏଥିପ୍ରତି ବିଶେଷ ଦୃଷ୍ଟି ନ ରଖୁଥିବାରୁ—କବିତା କ୍ଳାସର ଗ୍ରୁପସ୍ଥଳୀଙ୍କୁ ଦେଖିଲେ ମନହେବ—ସତେ କି ଏମାନଙ୍କୁ ଅଳ୍ପସମୟ ପରେ ଅପରେସନ୍ ଟେବୁଲ ଉପରକୁ ନିଆଯିବ ।

ବାଲ୍ୟକାଳରୁ ଏଥିରେ ଯେ ଅବହେଳା ଆମେ ଦେଖାଇଛୁ—ତା'ର ପ୍ରତିଫଳ ବା ଶାସ୍ତି ଭୋଗିବାକୁ ପଡ଼ୁଛି ଆମକୁ ବର୍ତ୍ତମାନ ସାହିତ୍ୟସଭାମାନଙ୍କରେ କବିତା-ପାଠୋତ୍ସବ କାଳରେ ।



# ହୀନମନ୍ୟତା ଓ ଓଡ଼ିଆଜାତି

ପରନିନ୍ଦାବିଳାସୀ, ଛିଦ୍ରାନ୍ୱେଷୀ, ଉଚ୍ଚମନ୍ୟ ଜାତି ବା ବ୍ୟକ୍ତି ଓଡ଼ିଆମାନଙ୍କର ବିନ୍ଦୁ ସୁପରିକଳ୍ପିତ ଦୁର୍ଗୁଣ ପ୍ରଚାର କରିଛନ୍ତି — ବିନ୍ଦୁ ସୁଗୁଣକୁ ଦୁର୍ଗୁଣରୂପେ ଚର୍ଚ୍ଚିତ କରିଛନ୍ତି—କିନ୍ତୁ "ଓଡ଼ିଆ ମାନେଇ ହୀନମନ୍ୟ"—ଏ ବିଶେଷଣଟି କାହାର ଅପବାଦ ନୁହେ । ଏହା ପ୍ରତ୍ୟେକ ଓଡ଼ିଆ ଆତ୍ମବିଶ୍ଲେଷଣ କରି ବୁଝି ପାରିବେ ଯେ—ଏଇ ରୋଗଟିକୁ ଆମେ ଜନ୍ମ ସୂତ୍ରରେ ଆମ ଚିତ୍ତ ଭିତରକୁ ଆଣିଛୁ ଓ ଲୋକଲଜ୍ଜା ଭୟରେ ତାହା କୁଆପି ପ୍ରକାଶ ନ କରି—ଏହାକୁ ଏକ ଦୁରାରୋଗ୍ୟ ବ୍ୟାଧିରେ ପରିଣତ କରି ଦେଲୁଣି ।

"ମୁଁ କ'ଣ କେଜାଣି—ତୁମେ କିଛି ନୁହଁ—ତାଙ୍କ କଥା ଅବା ପଡ଼ିଛି କିମ୍ପାଇଁ—ଆମ ପୂର୍ବପୁରୁଷ ବି ସେମିତି କିଛି ନ ଥିଲେ—ଆଉ ଆମର ଉତ୍ତରପୁରୁଷ ଯେ କ'ଣ କିଛି ହେବେ—ସେ କଥା ବାରୁ ଆଉ ଆଶା ନାହିଁ"—ଏଇ ହେଉଛି ଆମର ଶିକ୍ଷିତ ଓଡ଼ିଆଙ୍କର ସାଧାରଣ ମନୋବୃତ୍ତି—ଜାଣତରେ ବା ଅଜାଣତରେ । ଆମ ଗୁଣୀମାନଙ୍କର ଗୁଣ ଜାଣିବାରେ ଆମେଇ ଅନିଚ୍ଛୁକ । ଆମର ଅନୁଭୂତି ବା ଚିନ୍ତାର ଗୁରୁତ୍ୱ ଉପରେ ଆମର ଏକା ସଂଶୟ । ଆମର କର୍ମର ମୂଲ୍ୟ ଉପରେ ଆମର ହିଁ ସନ୍ଦେହାକୁଳ କୁଣ୍ଠା ।

ଯେଉଁଠି ଏତେ କୁଣ୍ଠା, ଏତେ ସଂଶୟ, ଏତେ ଅବିଶ୍ୱାସ — ଏତେ ଅବହେଳା —ସେଠି ପ୍ରଥମ ଶ୍ରେଣୀସ୍ଥ ପ୍ରତିଭା କେବେ ଉଧାଇ ପାରିବ ନାହିଁ । ସେଠି ବୈଜ୍ଞାନିକ, କାରିଗର, ସାହିତ୍ୟିକ ଓ କଳାବିତ୍‌ମାନଙ୍କର ସୃଜନଶୀଳତା ଅଚିରେ ମ୍ରିୟମାଣ ହୋଇ ପଡ଼ିବ । ଫଳରେ ଚତୁର୍ଦ୍ଦିଗରେ ଦେଖାଯିବ ଏକ କର୍ମହୀନ ଦୀପ୍ତିହୀନ ଶୂନ୍ୟତା । କେବଳ ଆମେ ଲକ୍ଷ୍ୟ କରିବା—ଓଡ଼ିଆମାନେ କିଛି କିଛି ଗୁକରି—

କିଛି କିଛି ପାନ ଦୋକାନ – ସାଇକେଲ ମରାମତି – କୋଉଠି କେମିତି ଅଗାଏ ଷ୍ଟଷ —ନ ହେଲେ ରାସ୍ତା ଗ୍ଲ' ଦୋକାନରେ ବସି ଅଳସ ଗପ ବା ଆଗଭଳି ଝିନାଥ ମେଳା ।

ଗୋଟିଏ ଜାତି ଯେତେବେଳେ ହରାଇ ବସିବ ତା'ର ମୌଳିକ ସୃଜନ କ୍ଷମତା—ତା'ର ବ୍ୟକ୍ତିଗତ ଓ ସମଷ୍ଟିଗତ ଆନନ୍ଦଧର୍ମୀ ମୁକ୍ତ କର୍ମୋଦ୍ୟମ— ସେତେବେଳେ ଏହି ହୀନମନ୍ୟତା ତା'ର ଅନ୍ତରକୁ ଖୋଳି ଖୋଳି ଖାଇଯିବ । ସେତେବେଳେ ସେ ରହିଁ ବସିବ ଶୁଣିବାକୁ—କିଏ ସବୁ ତା ଉପରେ କ'ଣ କହୁଛନ୍ତି ? "ଆନନ୍ଦ ପ୍ରଭା" ଆମର ଆଗୁର ବ୍ୟବହାର ଉପରେ କ'ଣ କହିଲା— "ଅମୃତ" କ'ଣ କହିଲା । ଆମର ରୂପ ଗୁଣ ଉପରେ—ଆଉ କ'ଣ କହିଲା "ଦେଶ" ଆମର ସାହିତ୍ୟ ଓ ସାହିତ୍ୟିକମାନଙ୍କ ଉପରେ—ଏହା ହିଁ ଶୁଣିବାକୁ ଆମେ ସବୁ କାମଦାମ ଛାଡ଼ି ଦେଇ—ବହି ଦୋକାନ, ମ୍ୟାଗାଜିନ ଷ୍ଟଲ୍—ରେଡ଼ିଓ ଷ୍ଟେସନ ପାଖେ କାନ ଡେରିଛୁ ।

ଗ୍ରେଟ ପିଲାମାନଙ୍କ ଖେଳରେ—ସବୁଠାରୁ ନିକମା, ନପାରିଲା, ନାକକାନ୍ଦୁରା ଛୁଆଟି ଯେମିତି - ନିଜେ ଖେଳେ ନାହିଁ – ଖୋଲାଳୀ ପିଲାଙ୍କ ସାଙ୍ଗେ ମିଶିପାରେ ନାହିଁ—ଅଥଚ ଖାଲି କାନ ଡେରିଥାଏ କିଏ ତାକୁ କ'ଣ ଚୁଗୁଲିଉଛି ଶୁଣିବାକୁ— —ବୋଉଲେ –ଦେଖିଲୁ ସେ ମତେ ଖତେଇ ହେଉଛି—ବୋଉଲେ ଦେଖିଲୁ ସେ ମତେ ଛେଉରୁଆ କହୁଛି—

ସେମିତି ହେଲଣି ବର୍ତ୍ତମାନ ଓଡ଼ିଆଙ୍କ ଅବସ୍ଥା । ପାରଳାଖେମୁଣ୍ଡିରେ ତେଲୁଗୁ "ହରିକଥା" ଚାଲିଥିବ—ସବୁ ଶୀତରାତି ଆଉ ଖରାରାତିରେ – । ଓଡ଼ିଆଙ୍କ ଦାସକାଠିଆ—ପାଲା କେବଳ ଥିବ ଭାଷାକୋଷ ଅଭିଧାନରେ – ବାରିପଦାରେ ଚାଲିଥିବ "ରବୀନ୍ଦ୍ର ଜୟନ୍ତୀ" । ଭଞ୍ଜଭୂମିରେ "ଭଞ୍ଜ ଜୟନ୍ତୀ" ନଥିବ ବ ସ୍ୱପ୍ନରେ । ଭୁବନେଶ୍ୱରରେ ଚାଲିଥିବ ସାର୍ବଜନୀନ ଦୁର୍ଗାପୂଜାର ଉତ୍ସବ – ଓଡ଼ିଆଙ୍କର ରଜପର୍ବ କୁଆର ପୁନେଇଁ ପର୍ବ – ଦୋଳପର୍ବ ଗାଁରେ ଉଜୁଆଁ ହେଉଥିବ । ଓଡ଼ିଶାରେ ବଙ୍ଗଳା, ହିନ୍ଦୀ ଓ ତେଲୁଗୁ ବହି, ପତ୍ରିକାଦିର ପ୍ରସାର ଓ ବିକ୍ରୟ ବଢ଼ିଚାଲିଥିବ— ଓଡ଼ିଆ ପତ୍ରିକାଟିଏ କଲେଜ ହଷ୍ଟେଲରେ ବ ଦେଖିବାକୁ ମିଳିବ ନାହିଁ — । ଓଡ଼ିଆ ବହିଟିଏ କାହା ବ୍ରତଘରେ କି ବାହାଘରେ ବ ଉପହାର ହିଆନିଆ ହେବ ନାହିଁ—ଏ କ୍ଷେତ୍ରରେ ଆମକୁ କିଏ ସଭ୍ୟଜାତି ନ କହିଲେ—ଆମେ ଠେଙ୍ଗାବାଡ଼ି ହଣାଇଲେ କ'ଣ ହେବ ? (ତା' ମଧ୍ୟ ଆମେ କୋଉ ହଣାଇ ପାରୁଛୁ ?)

ଜଣେ କୃତବିଦ୍ୟ ଉଚ୍ଚପଦସ୍ଥ ଉଚ୍ଚଶିକ୍ଷିତ ଓଡ଼ିଆଙ୍କ ଘରେ—
ବାପା ପଢ଼ନ୍ତି—ଇଲଷ୍ଟ୍ରେଟେଡ୍ ଉଇକ୍ଲି
ରିଡ଼ରସ୍ ଡାଇଜେଷ୍ଟ୍
ମା' ପଢ଼ନ୍ତି—ବଙ୍ଗଳା ସିନେମାଜଗତ
ଉଲ୍ଟାରଥ
ଝିଅ, ପୁଅ ଓ ବୋହୂ ପଢ଼ନ୍ତି—ଫେମିନା
ଧର୍ମଯୁଗ୍
ମନୋହର କହାନିୟାଁ
ଫିଲ୍ମ ଫେୟାର୍

କାହିଁ ଝଙ୍କାର ? ଡଗର ? ନବଜୀବନ ? ଜୀବନରଙ୍ଗ ? ସମସ୍ତ ପରିବାର ଏକ ସ୍ୱରରେ କହନ୍ତି—ଛି—ଛି—ଛି—ସେ ସବୁଥିରେ କ'ଣ ଅଛି ପଢ଼ିବାକୁ ? ପଇସା ଦେଇ ଦେଇ ପଢ଼ିବୁ ? ତୁମେ ଯେଉଁଥିରେ ଲେଖକ—ତାକୁ ସବୁ ପଇସା ଦେଇ କିଣି ପଢ଼ାଯାଏ ? ହୀନମନ୍ୟତାର ଆହୁରି କରୁଣ ଉଦାହରଣମାନ ରହିଛି । କର୍ମହୀନ ବିମୂଢ଼ତା—ଓ ଆତ୍ମବିଶ୍ୱାସହୀନତାକୁ ଅତିକ୍ରମ ନକଲେ ଏ ରୋଗ ନିରାକରଣ ଅସମ୍ଭବ ।



# ଭଞ୍ଜଜୟନ୍ତୀ

ଗତ କୋଡ଼ିଏ ବର୍ଷ ଧରି ପ୍ରତିବର୍ଷ ଯେଉଁ କେତୋଟି ମୁଷ୍ଟିମେୟ ସାହିତ୍ୟ ଓ ସାଂସ୍କୃତିକ ଉତ୍ସବମାନ ନିୟମିତ ଓ ନିଷ୍ଠାପରଭାବେ ଅନୁଷ୍ଠିତ ହୋଇ ଆସିଛି – ତନ୍ମଧ୍ୟରୁ ଭଞ୍ଜଜୟନ୍ତୀଭଳି ସାର୍ବଜନୀନ ସାହିତ୍ୟଉତ୍ସବ ଆମ ଜାଣିବାରେ ଆଉ ନାହିଁ । ଆଜି ଏହା ଏକ ସର୍ବ-ଉତ୍କଳୀୟ ସାଂସ୍କୃତିକ ଅନୁଷ୍ଠାନରେ ପରିଣତ ହୋଇଗଲାଣି ।

ଏହି ଉତ୍ସବର ମୂଳ ପରିକଳ୍ପନା, ପରିସ୍ଥାପନା ଓ ପ୍ରଯୋଜନାରେ ଯେଉଁ ଶକ୍ତିଶାଳୀ ଓ କ୍ଷାନ୍ତିକାମୀ ନେତୃତ୍ୱ ଏହାକୁ ଏକ ଦୀର୍ଘଗତି-ବେଗ ଦେଇଥିଲା – ତାହା ବଳରେ ବହୁ ବିରୋଧ ଓ ଅବହେଳାକୁ ପଦଦଳିତ କରି ତାହା ଆଜି ଅପ୍ରତିହତଭାବେ, ଭାରତବର୍ଷଠାରୁ ଆରମ୍ଭକରି ପୁରୀଠାରୁ, କୁଳଙ୍ଗଯାଏ ମାଡ଼ି ଯାଇଛି । ଏ ଗୌରବ ପ୍ରାଚୀ ସାହିତ୍ୟର ଅନ୍ୟତମ ପ୍ରତିଷ୍ଠାତା, ଆଜୀବନ ସାହିତ୍ୟସାଧକ ସ୍ୱର୍ଗୀୟ ବିଚ୍ଛନ୍ଦଚରଣ ଏବଂ ତାଙ୍କ ପ୍ରତିଷ୍ଠିତ "କଳିଙ୍ଗ ଭାରତୀ" ଓ "ଗ୍ରନ୍ଥ ସାହିତ୍ୟ ସମାଜ"ର ଏକାନ୍ତ ପ୍ରାପ୍ୟ ।

ଭଞ୍ଜକାବ୍ୟ-ପ୍ରଭାବ-ଯୁଗର ଅବସାନ ଓ ଆଧୁନିକ-କାବ୍ୟଯୁଗର ଆସନ୍ନ—ଏଇ କାଳସନ୍ଧିରେ ରାଧାନାଥୀ ଦରବାରରେ ପ୍ରଥମେ ଭଞ୍ଜଙ୍କୁ ଅଗ୍ନିପରୀକ୍ଷାର ସମ୍ମୁଖୀନ ହେବାକୁ ପଡ଼ିଥିଲା । "ବଜ୍ରକୂଳି" ଓ "ଇନ୍ଦ୍ରଧନୁ"ର ଅପପ୍ରଚାରମୂଳକ ସଂଗ୍ରାମରେ ରାଧାନାଥୀ କାବ୍ୟଚେତନା ସମସ୍ତଙ୍କ ଅଜାଣତରେ ଭଞ୍ଜକାବ୍ୟଚେତନା ସଙ୍ଗେ ଏକ ସନ୍ଧି କରିବାକୁ ବାଧ୍ୟ ହେଲା ।

ତା'ପରେ ଆସେ "ପ୍ରାଚୀ ସାହିତ୍ୟ ସମିତି" ଓ "ସବୁଜ-ସାହିତ୍ୟସମିତି"ର ସଂଗ୍ରାମକାଳ । ଏଥିରେ ମଧ୍ୟ ସମସ୍ତ ପ୍ରାଚୀନ ସାହିତ୍ୟର ସେନାପତିରୂପେ ଭଞ୍ଜଙ୍କୁ ହିଁ ଅବତୀର୍ଣ୍ଣ ହେବାକୁ ପଡ଼ିଥିଲା । ଏ ସଂଗ୍ରାମ କିନ୍ତୁ "ବଜ୍ରକୂଳି" "ଇନ୍ଦ୍ରଧନୁ"

ସଂଗ୍ରାମଭଳି, ଅପପ୍ରଚାର ବା କୁତ୍ସା ବାକ୍ୟବାଣ କ୍ଷେପଣ ନିକ୍ଷେପଣରେ ପର୍ଯ୍ୟବସିତ ନ ହୋଇ—ଖିଡମତ ଏକ ମାନସିକ, ବୁଦ୍ଧିଗତ ଓ ରସଗତ ସଂଗ୍ରାମରେ ପରିଣତ ହେଲା । ଏ ଯୁଦ୍ଧରେ ଉଭୟ ଯୁଗର କାବ୍ୟ ପୁରୁଷର ସମସ୍ତ ବାହ୍ୟସଜ୍ଜାର ବିନାଶ ଘଟିଗଲା, ମାତ୍ର ଉଭୟପକ୍ଷର ତତ୍ତ୍ୱସଙ୍ଗେ ଆତ୍ମପ୍ରକାଶ ମଧ୍ୟ ହୋଇଗଲା । ଭଞ୍ଜକାବ୍ୟ ଓ ଆଧୁନିକକାବ୍ୟର ଅସଲ ଆତ୍ମାର ପରିଚୟ ତଦ୍ଦ୍ୱାରା ପ୍ରକଟିତ ହେଲା । ତା'ର ଫଳରେ ତ ଆଜି ପ୍ରାଚୀ ସାହିତ୍ୟର ଅମର ଗୌରବ ଉପରେ ଆଧୁନିକ ସାହିତ୍ୟର ଅତି ସ୍ପଷ୍ଟ ବର୍ତ୍ତମାନ ଓ ସମ୍ଭାବନାମୟ ଭବିଷ୍ୟତ୍ ଉନ୍ନତ ଶିର ଟେକି ଠିଆ ହୋଇ ରହିଛି ।

କିନ୍ତୁ ଭଞ୍ଜଜୟନ୍ତୀ-ଅନୁଷ୍ଠାନର ଆରମ୍ଭ ଓ ଉଦ୍ୟୋଗ-ପର୍ବକୁ ନିରପେକ୍ଷ ଅଥଚ ସହାନୁଭୂତିଶୀଳ ହୋଇ ବିଶ୍ଳେଷଣ କରି ଦେଖିଲେ ଆମେ କ'ଣ ବୁଝୁ ?

ଅତି ଘୋର ଏକ ଉନ୍ନତ ଜାତୀୟପ୍ରାଣତା, ନିଷ୍ଠା, ଅଧ୍ୟବସାୟ ଓ ମନନଶୀଳତାରେ ଅତି ଦୃଢ଼ ଏକଦଳ ଯୁବକଙ୍କର ପ୍ରାଣକେନ୍ଦ୍ରରେ, ପଡ଼ୋଶୀ ସାହିତ୍ୟ ସଂସ୍କୃତିର ସ୍ପର୍ଦ୍ଧା ବିରୁଦ୍ଧରେ ଏକ ଭୟଙ୍କର ପ୍ରାଣମୂର୍ଚ୍ଛା । ସଂଗ୍ରାମଶୀଳ ପ୍ରତିଦ୍ୱନ୍ଦ୍ୱୀର ହୁଙ୍କାର—ଏବଂ ତା' ସାଙ୍ଗକୁ ଏଣେ ପୁଣି ତତ୍କାଳୀନ ସ୍ୱଦେଶୀୟ କେତେକ ବିଦେଶୀ ରୁଚି ପ୍ରତି ଅତି-ଶ୍ରଦ୍ଧା-ନିର୍ଭର ସାହିତ୍ୟିକମାନଙ୍କର ମୀଠ ଓ ଶୁଚି ବାୟୁଗ୍ରସ୍ତ ହୀନମନ୍ୟତାରେ ପରିପୂର୍ଣ୍ଣ ମନରେ, ପ୍ରାଚୀନ ସାହିତ୍ୟ ବିରୁଦ୍ଧରେ ଏକ ପ୍ରକାର ଉନ୍ମାସିକ ଅବହେଳା-ପ୍ରବଣତା ଓ ମଲ୍ଲସ୍ୱୀକୃତରେ ଅତିଶୟ ମୀଚ କୁଣ୍ଠା ଉପରେ ପଦାଘାତ କରିବାର ଏକ ଦୁର୍ବିନୀତ ସାହସିକତା ମଧ୍ୟ ପ୍ରେରଣା ଯୋଗାଇଥିଲା ଏହିଭଳି ଏକ ଅନୁଷ୍ଠାନ ପ୍ରଯୋଜନାରେ ।

ଭଞ୍ଜଜୟନ୍ତୀ ପ୍ରାରମ୍ଭକାଳରେ ଆଧୁନିକ ଲେଖାସବୁ ଏକାଠି ଜମା କରି ପୋଡ଼ିବା ଓ ବଙ୍ଗ ସାହିତ୍ୟର କ୍ରୟ, ପଠନ ଓ ପ୍ରସାରକୁ ସଂପୂର୍ଣ୍ଣଭାବେ ରୋକିବା ଆଦି ନାନା କର୍ମ ଓ ଅପକର୍ମମାନ ମଧ୍ୟ ଥିଲା—ସେ କାଳର ଏହି ବହ୍ନିନାଦୀ ଉତ୍ସବର ଏକ ବଳଭୋଜୀ ବ୍ୟସନ ।

ବିଚିତ୍ର କଥା—ସବୁକାଳର ସବୁ ଆନ୍ଦୋଳନପରି ଭଞ୍ଜ ଆନ୍ଦୋଳନ ବା ପ୍ରାଚୀନ ସାହିତ୍ୟ ଆନ୍ଦୋଳନର କର୍ତ୍ତା ଓ କର୍ମୀମାନେ ମଧ୍ୟ ଥିଲେ କେବଳ ଯୁବକଗଣ । ସେମାନଙ୍କର ରସବୋଧ, ବୌଦ୍ଧିକତା, ପ୍ରଜ୍ଞା, ପ୍ରତିଭା ଓ ଦାର୍ଶନିକତାର ଅଭାବ ନ ଥିଲା । ଯଦିଓ ଆନ୍ଦୋଳନର ଆଦିପର୍ବରେ

ସେମାନେ ଥିଲେ ପ୍ରମତ୍ତ, ପ୍ରଗଲ୍‌ଭ, ଅଭିମାନୀ, ଅସହିଷ୍ଣୁ, କ୍ଷିପ୍ରତେଜା ଏକଲକ୍ଷ୍ୟ— ଅନୁଦାର ଓ ରାଜସିକ ଗୁଣୋଦ୍ଭବ ଘୋରକର୍ମୀ ଘୋରଭାଷୀ । ସଂଗ୍ରାମୀ ଯୋଦ୍ଧା ମାନଙ୍କର ଏ ସମସ୍ତ ସଦ୍‌ଗୁଣ ସେମାନଙ୍କର ଥିଲା ।

ପ୍ରତିଭା-ପୂଜା ଓ ପ୍ରାଚୀନ ସାହିତ୍ୟର ଆଦରଣୀୟ ପ୍ରସାରସଙ୍ଗେ ଏକ ବଳିଷ୍ଠ ଜାତୀୟ ସଂସ୍କୃତିର ଆତ୍ମପ୍ରକାଶ ଓ ଆତ୍ମପ୍ରତିଷ୍ଠା ଲାଗି ଉଦ୍ୟମ ମଧ୍ୟ ଥିଲା ଏହି ଆନ୍ଦୋଳନର ଆଭିମୁଖ୍ୟରେ ଏକ ରାଜନୀତିକ ସଂଗ୍ରାମର ସର୍ବସ୍ୱ ପ୍ରରୋଚନା ।

ଅବଶ୍ୟ ଏହି ସଫଳତା ଅର୍ଜିତ ହୋଇଗଲା ପରେ ସ୍ୱାଭାବିକଭାବେ ଲକ୍ଷ୍ୟରେ, ସାଧନରେ, ମନନରେ ଓ ବୋଧକତାରେ ପୁଣି ଆସିଗଲା ଉଦାରତା ଓ ବହୁମୁଖୀନତା । ସେମାନେ ପ୍ରମାଣ କରିଦେଲେ—ଭଞ୍ଜଙ୍କ ପ୍ରତିଷ୍ଠା ଉପରେ ନିର୍ଭର କରୁଥିଲା—ଆଧୁନିକ ସାହିତ୍ୟର ଗୌରବମୟ ପରିଚୟ ଓ ପ୍ରସାର । ଏ ଯେପରି ପୁତ୍ରର ପ୍ରତିଷ୍ଠା ଆୟୋଜନରେ—ପିତାର ଗୌରବ ପ୍ରତିପାଦନ !!

ଆଜି ଭଞ୍ଜଜୟନ୍ତୀ ଜଣେ ବଡ଼ କବିଙ୍କର ଜୟନ୍ତୀ ମାତ୍ର ନୁହେଁ— ଏହା ଜାତୀୟ ସାଂସ୍କୃତିକ ଆତ୍ମାର ମୁକ୍ତି-ଉତ୍ସବ । ଏ ଜାତିର ପ୍ରାଣାବେଗ, ସ୍ୱଚ୍ଛରୁଚି, ସୌନ୍ଦର୍ଯ୍ୟବୋଧ, ଜୀବନଛନ୍ଦ, କଳାନୁରାଗ ଓ ସଙ୍ଗଠନମୟ ସାଂସ୍କୃତିକ ଐକ୍ୟବିଧାୟକ-ସାମାଜିକତା—ଏହି ଏକମାତ୍ର ଭଞ୍ଜଜୟନ୍ତୀ ମାଧ୍ୟମରେ ହିଁ ଆଜି ପରିବ୍ୟକ୍ତ ହୋଇ ପାରିଛି—ଏ ସତ୍ୟକୁ ଘୋର ଭଞ୍ଜବିରୋଧୀ ମଧ୍ୟ ଅସ୍ୱୀକାର କରିବାକୁ କୁଣ୍ଠାବୋଧ କରିବେ ।

ଭଞ୍ଜଙ୍କଠାରୁ ଆଉ କିଏ ବଡ଼ କବି ଅଛନ୍ତି କି ନାହାନ୍ତି—ତାହା କାଗଜପତ୍ରରେ ଓ ପ୍ରାଜ୍ଞ ମହଲରେ ଆଲାପ-ବିଳାସର ବିଷୟ ହୋଇ ପଡ଼ିଛି ରହୁ—ମାତ୍ର କେହି ଯେପରି ଭଞ୍ଜମଣ୍ଡପର ଜ୍ୱଳନ୍ତ ଓ ଜୀବନ୍ତ ଆନନ୍ଦର ଆଲୋକମାଳାକୁ ତମୋଗ୍ରସ୍ତ ଅହଙ୍କାର ଓ ଈର୍ଷାଜର୍ଜରିତ ଜିଘାଂସାରେ ଫୁଙ୍କି ଲିଭାଇଦେବାର ବାସନା ମନରେ ପୋଷଣ ନ କରୁ ।

ଦୁଇଦିନଠାରୁ ସାତଦିନ ପର୍ଯ୍ୟନ୍ତ ଭଞ୍ଜସାହିତ୍ୟ ଉପରେ ବକ୍ତୃତାମାଳା, (ଓଡ଼ିଶୀ) ସଙ୍ଗୀତ, ନୃତ୍ୟ, ପାଲା, ଦାସକାଠିଆ ଓ ନାଟକାଦି ବିଭିନ୍ନ ସାଂସ୍କୃତିକ ପର୍ବରେ ଭଞ୍ଜଜୟନ୍ତୀ ଉତ୍ସବଟି ବିରଚିତ ଓ ବିଳସିତ । ଆଉ

ଆଶ୍ଚର୍ଯ୍ୟ କଥା—ଏହି ଉତ୍ସବର ଆୟୋଜନ ପ୍ରଚାରମୂଳକ ନ ହୋଇ ସ୍ୱତଃପ୍ରଣୋଦିତଭାବେ ପ୍ରସାରିତ ହୋଇ ଚାଲିଛି ଦିନକୁଦିନ । ଏହା ହିଁ ପ୍ରମାଣ କରେ ଯେ ଏହା ଏକ ଶୁଭାନୁଷ୍ଠାନ ।

## ଉତ୍ସାହ ଓ ସତର୍କତା :

ମାତ୍ର "ଶୁଭ କର୍ମ" ଆଚରଣରେ ମଧ୍ୟ ସର୍ବଦା ସତର୍କତା ଓ ସଚେତନତା ପ୍ରୟୋଜନ । ଏହାହିଁ "କାଳ ଧର୍ମ" । ପ୍ରତିକାଳର ନିର୍ମାଣଶୀଳତା ଜନ୍ମ ନିଏ—ସେହିକାଳର ସର୍ବଶ୍ରେଷ୍ଠ ସଚେତନ ବ୍ୟକ୍ତିମାନଙ୍କର ଅହଂ-ବର୍ଜିତ ମନନଶୀଳତା ମଧ୍ୟରୁ । ଯେ କୌଣସି ସୁସ୍ଥ ପରମ୍ପରା ବା ଶୁଭାନୁଷ୍ଠାନ ଅଚିରେ ଜଡ଼ ଓ ମୃତ୍ୟୁର କବଳିତ ହୋଇପଡ଼େ—ଯଦି ତାହା ଉପସ୍ଥିତ କାଳର ଶୁଭବୁଦ୍ଧି ପ୍ରସୂତ-ସର୍ଜିନୀ-ଚେତନା ସହିତ ସଂଯୋଗ ରକ୍ଷା ନ କରେ ।

ଦୁଃଖର କଥା ଆମେ ଆଜଯାଏ ଭଞ୍ଜକବି ସମ୍ରାଟ୍ କି ପ୍ରହସା, ଶ୍ଳୀଳ କି ଅଶ୍ଳୀଳ, ରୀତିବାଦୀ ନା ଭାବବାଦୀ, ପ୍ରେମିକ କି କାମୁକ—ଏହାରି ଉପରେ ବାରମ୍ବାର ବାହ୍ୟସ୍ଫୂର୍ତ୍ତ ବାଗାଡ଼ମ୍ବର ବା ପ୍ରଗଲ୍ଭ ବଚନକାମାନ ଏକ କଣ୍ଠରେ ଉଚ୍ଚାରଣ କରି ଆସୁଛୁ । ଏହି ସାରସତ୍ତ୍ୱହୀନ ପୌନଃପୁନିକତାରେ ଉଦ୍‌ଗାତା, ହୋତା ଓ ବକ୍ତାମାନଙ୍କୁ ଛାଡ଼ିଦେଲେ—ଶ୍ରୋତାମାନେ କ୍ଳାନ୍ତ ମହାକ୍ଳାନ୍ତ ଓ ଅବସନ୍ନ । ଅଧିକାଂଶ ଉଦ୍‌ଗାତା ଓ ବକ୍ତାମାନଙ୍କଠାରୁ କିଛି ପ୍ରତିକ୍ରିୟା ଆଶା କରିବା ବୃଥା । କାରଣ ସେମାନେ ବକ୍ତୃତା ଗାଳିବାର ବା ବଚନକାମାନ ଝାଡ଼ିବାର ଯାନ୍ତ୍ରିକ ରେକର୍ଡ଼ । ବାହାଘର ବା ବ୍ରତଘରର ଆଧୁନିକ ପୁରୋହିତମାନଙ୍କ ଭଳି ସେମାନେ ଏକ ଯାନ୍ତ୍ରିକ ମନ୍ତ୍ରୋଚ୍ଚାରଣର ଦାୟିତ୍ୱହୀନ, ନିର୍ଲିପ୍ତ ଓ ସ୍ୱୟଂ-ପୂଜା-ସମ୍ମାନ-ଆଗ୍ରହୀ ଯାଜକଗଣ ।

ମାତ୍ର ଯଥାର୍ଥ ଭଞ୍ଜପ୍ରେମୀମାନେ ଜାଣିବାକୁ ଚାହାନ୍ତି—ଭଞ୍ଜ ଯଦି ସମ୍ରାଟ୍—ତେବେ ସେ "ଘୁମୁସର"ର ନା—କଳିଙ୍ଗ-ଭାରତୀ-ସାମ୍ରାଜ୍ୟର ନା-ନୟାଗଡ଼-ମାଳସାହି-ସନ୍ନିକଟବର୍ତ୍ତୀ ସିଦ୍ଧକୁମାର ? ଲାବଣ୍ୟବତୀ, ପ୍ରେମ-ସୁଧାନିଧିମାନଙ୍କର ବନ୍ଦୀବିମୋକ୍ଷଣରେ ତାଙ୍କ ପ୍ରେମିକତାର ପ୍ରତିଷ୍ଠା "ଦେଖି ନବକାଳିକା ବକାଳିକାମାଳିକା" ବା "ବୃନ୍ଦ ତମାଳମାଳମାଳତୀ ଲତା ଯହିଁ" ନା "ବଢ଼ାଇ ଦେଲେ ପସ୍ପର ଭାବଗାହୀ ରଘୁବୀର"ର ଅନ୍ତର୍ନିହିତ ସିଦ୍ଧ ରୂପରସ-ମାଧୁର୍ଯ୍ୟରେ ତାହା ପ୍ରତିଫଳିତ ?

ଯଦି ସେ ସ୍ୱଭବାଦୀ—ତେବେ ତାହା କ'ଣ କେବଳ ଆଦ୍ୟ, ମଧ୍ୟ, ପ୍ରାନ୍ତ, ସର୍ବ ଯମକରୁ ଚ୍ଛେକା, ଲାଟା ଓ ଅନ୍ତ୍ୟାନୁପ୍ରାସବାଟେ ମେଷଯୁକ୍ତ ବା ଶାର୍ଦ୍ଦ ଲବକୀଡ଼ିତ ଆଦି ଶବ୍ଦ ପଦ ଓ ବାକ୍ୟାବଳୀର ଦାବାଖେଳରେ ହି ପ୍ରମାଣିତ ? ସଂସ୍କୃତ ସାହିତ୍ୟର ବିଗ୍ରହ-ବିଶ୍ଳେଷଣ-ପଦ୍ଧତିରେ "ସ୍ୱଭବାଦ"ର ସଂଜ୍ଞା ଓ ବର୍ଣ୍ଣନା ଏବଂ ପ୍ରାକୃତ ସାହିତ୍ୟମାନଙ୍କରେ ତା'ର କ୍ରମ ବିକାଶର ସ୍ୱରୂପ କିପରି ପ୍ରକଟିତ ହୋଇଛି—ପୁଣି ଭଞ୍ଜଙ୍କ ଲେଖାରେ ତାହା କେତେ ଅନୁକୃତ ଓ କେତେ ସ୍ୱକୃତ—ଏସବୁ ଉପରେ ସାହିତ୍ୟର ବୈଜ୍ଞାନିକ ବିଶ୍ଳେଷଣା-ପଦ୍ଧତି ପ୍ରୟୋଗ କରି କେହି କୌଣସି ମତ ଆଜିଯାଏ ପ୍ରତିଷ୍ଠା କରି ନାହିଁ କିମ୍ବା ସେଥିଲାଗି ବିଶ୍ୱବିଦ୍ୟାଳୟ ବା ଏକାଡେମୀରେ କ'ଣ ଉଦ୍ୟମ ହୋଇଛି ବା ହେଉଛି ତାହା ଆମ ଆଖିରେ ଜଳଜଳ ହୋଇ ଦୃଶ୍ୟ ହେଉ ନାହିଁ ।

ମୋଟ ଉପରେ ଭଞ୍ଜଙ୍କର କାବ୍ୟ-ମହିମା-ପ୍ରତିପାଦନ ପାଇଁ କେହି କିଛି ଆଖିଦୃଶିଆ କାର୍ଯ୍ୟ କରି ନାହିଁ; କିନ୍ତୁ ଆଜିର ଇଲିଅଟ୍, ପାଉଣ୍ଡ, ଲର୍କା, ବୋଦଲେୟାର ପରିବେଷିତ କାବ୍ୟରସ-ପୁଷ୍ଟ ମନରେ ବି ସେ ବଞ୍ଚିଛନ୍ତି ଓ ଶ୍ରଦ୍ଧା ପାଉଛନ୍ତି । ଏହାହିଁ ପ୍ରମାଣ ଦିଏ ଯେ ଭଞ୍ଜକବି ଆପଣାର ସ୍ୱକୀୟ ଜୀବନୀ-ଶକ୍ତି, ଶୌର୍ଯ୍ୟ, ବୀର୍ଯ୍ୟ ଓ ମହିମାରେ ଆପେ ଅଜାମର ଓ ଆପଣାର ତେଜୋସ୍ୱୀ ଦୀପ୍ତିରେ ଆପେ ଉଦ୍ଭାସିତ । ଆମେ କିନ୍ତୁ ଏହି ଅମରତାର ପ୍ରକୃତି ଓ ବିଭବର ରହସ୍ୟକୁ ବିଶ୍ଳେଷଣ କରିବାର ଅତୀବ କଷ୍ଟସାଧ୍ୟ ଦାୟିତ୍ୱକୁ ସର୍ବଦା ଏଡ଼ି ଏଡ଼ି ଯାଇଛୁ । ଆମ ଜାତିର ସ୍ୱଭବ— ଯେ "ମରିଗଲା" ତାକୁ "ତରିଗଲା" କହି ତା' ଦାୟିତ୍ୱରୁ ଖସିଯିବା ଓ ଯେ "ବଞ୍ଚିଲା"—ତାକୁ "ବଞ୍ଚିଗଲା"—ଏତିକି ମାତ୍ର କହିଦେଇ—ତା' ଦାୟିତ୍ୱ ବି କାନ୍ଧରୁ ଖସାଇ ଦେଇ ବସିଯିବା ।

**ଭଞ୍ଜ-କାବ୍ୟ ସ୍ୱଭବ :**

ଯେ ହେତୁ ସବୁ ଯୁଗରେ ଯୁବସମାଜ ହିଁ ଭଞ୍ଜଙ୍କ ଲାଗି ପାଗଳ ଏବଂ ଯୌବନହିଁ ରୂପ ଓ ଚମତ୍କାରତାର ରଙ୍ଗଭୂମି—ପୁଣି ଯୌବନକାଳ ହିଁ ଭଞ୍ଜ-କାବ୍ୟ-ଆତ୍ମାର ବିକାଶକାଳ; ସେହେତୁ ସେ ରୂପସୌନ୍ଦର୍ଯ୍ୟର କବି—ଚମତ୍କାର କବି ।

ସେଥିଲାଗି ଏଣୁ ତେଣୁ ଭୂଆଁ ନ ବୁଲି "ସୌନ୍ଦର୍ଯ୍ୟବାଦ" ଓ "ଚମତ୍କାରବାଦ" ଦୃଷ୍ଟିରୁ ଭଞ୍ଜ ସାହିତ୍ୟର ଆଧୁନିକ ବିଶ୍ଳେଷଣ ଆରମ୍ଭ କରାଯାଉ ।

ଯଦିଓ ଏହି ଧାରାର ଆଲୋଚନା ପରିସର ଭିତରକୁ ନିଶ୍ଚୟ ଆସିଯିବ— ତାଙ୍କର ଶବ୍ଦ, ଅଳଙ୍କାର; ପ୍ରକୃତି ଓ ନାରୀରୂପ ବର୍ଣ୍ଣନା ଏବଂ ତଦ୍ଦ୍ୱାରା ଭଞ୍ଜ ନିଜେ ଭଲ ବୁଝିହେବେ ଓ ଆମେ ଭଞ୍ଜଙ୍କୁ ଭଲ ବୁଝିବୁ ।

କିନ୍ତୁ ଏ ସବୁର ବିଚାର ବିଶ୍ଳେଷଣ ଲାଗି ପ୍ରାଚୀନମାନଙ୍କୁ ନିୟୋଜିତ ନ କରି—ଯୁବ-କାବ୍ୟ-ବିଶେଷଜ୍ଞମାନଙ୍କୁ ନିଯୁକ୍ତ କରିପାରିଲେ ସୁଫଳ ମିଳିବ । କାରଣ ନୈଷଧ-କାଳିଦାସ ପୁଷ୍ଟ ମନୋଭୂମିରେ ଭଞ୍ଜ ପରୀକ୍ଷିତ । ବର୍ତ୍ତମାନ ଇଲିଅଟ-ପାଉଣ୍ଡ-ପୁଷ୍ଟ ମନୋରାଜ୍ୟରେ ତାଙ୍କୁ ପୁଣି ଥରେ ପରୀକ୍ଷାର ସମ୍ମୁଖୀନ ହେବାକୁ ପଡ଼ିବ । (ଅବଶ୍ୟ ଏ ଆହ୍ୱାନର ସମ୍ମୁଖୀନ ହେବାକୁ "ଉପେନ୍ଦ୍ର ଭଞ୍ଜ ବୀରବର" ଆଦୌ ନୁହନ୍ତି—ମାତ୍ର ଯେତେ ଭୟ ତାଙ୍କର ଅଳ୍ପ ଦୁର୍ବଳ ସ୍ତାବକମାନଙ୍କର ଓ ଭଞ୍ଜ-ବୋଲି-ଧୂରନ୍ଧର କାବ୍ୟ ଚେତନାହୀନ ରେକର୍ଡମାନଙ୍କର !!)

## ଭଞ୍ଜ ଛାୟାବୃତ ପ୍ରତିଭା :

ଭଞ୍ଜଜୟନ୍ତୀ ଉତ୍ସବ ପରିଚାଳନାରେ ଦାୟିତ୍ୱହୀନ ଯାନ୍ତ୍ରିକତା ଓ ଅତି ମୁଗ୍ଧ ଆବେଗବାହୁଲ୍ୟ ପଶିଯିବା ଫଳରେ, ଭଞ୍ଜ-ନାମ-ମହିମାର ବହୁ ଆଡ଼ମ୍ବରପୂର୍ଣ୍ଣ ଆଲୋକ ଦଣ୍ଡମାନ ସାହିତ୍ୟସରଣୀର ଦୁଇ ପାର୍ଶ୍ୱରେ ଖଡ୍ଗ ଭଳି ସେମାନଙ୍କର ଆଲୋକାଘାତରେ ସାଧାରଣ କାବ୍ୟାମୋଦୀମାନଙ୍କର ବୋଧଦୃଷ୍ଟିକୁ ଜଳକା କରି ଦେଇଛି ।

ସେହି କାରଣରୁ ଆଜଯାଏ—ପ୍ରାଚୀନ କବି ଜଗନ୍ନାଥ, ବଳରାମ, ଅଚ୍ୟୁତ, ଭୂପତି, ଅଭିମନ୍ୟୁ, ଭକ୍ତ ଚରଣ, କବିସୂର୍ଯ୍ୟ, ଗୋପାଳକୃଷ୍ଣ ଓ ଭୀମଭୋଇ ଆଦି ମୁନି କବିମାନଙ୍କର ମୂଲ୍ୟବୋଧ, ମୂଲ୍ୟକଳନା ଓ ମୂଲ୍ୟ ପ୍ରତିଷ୍ଠାଲାଗି ଉଦ୍ୟମ ସାର୍ବଜନୀନ-ଭାବେ ଏ ଯାବତ୍ ହୋଇ ନାହିଁ ଏବଂ ହୋଇ ନାହିଁ ବୋଲି ଆମେ ଭଞ୍ଜଙ୍କୁ ମଧ୍ୟ ଏପରି ବିକଳାଙ୍ଗଭାବେ ବୁଝୁଛୁ ଯେ, ତଦ୍ୱାରା ଆମର କାବ୍ୟ-ବୋଧ ଓ ରୁଚି-ଚର୍ଯ୍ୟା ଉପରେ ମଧ୍ୟ ବିଦଗ୍ଧ ବିଦ୍ୱାନ୍‌ଗଣ ଅତି ଦୁଃଖର ସହିତ ସଂଶୟୀ ହୋଇ ପଡ଼ନ୍ତି । କାରଣ କୌଣସି ମହାନ୍ କବି ତା'ର କାବ୍ୟ-ମହିମାର ଉତ୍ତୁଙ୍ଗତା ଲାଗି କଦାପି ଶ୍ରେଣୀହୀନ ନୁହେଁ । ବହୁ ଶୃଙ୍ଗ-ଉପଶୃଙ୍ଗବେଷ୍ଟିତ, ବହୁ ରହସ୍ୟ-ରୋମାଞ୍ଚପରିପୂର୍ଣ୍ଣ ଏକ ମହାନ୍ ପର୍ବତମାଳାକୁ ସମଷ୍ଟିଗତଭାବେ "ହିମାଳୟ" ବୋଲି ଚେତନାରେ ନ ବୁଝିଲେ ଓ ମନରେ ନ ମାନିଲେ କେବଳ ଗୌରୀଶଙ୍କରର ବଡ଼ପଣକୁ ବୁଝି ହେବ ନାହିଁ—ବୁଝାଇ ହେବ ନାହିଁ; ଯେନ ହେବ ନାହିଁ କି ଯେନାଇଁ ହେବ ନାହିଁ ।

**କଂକର୍ତ୍ତବ୍ୟ :**

ଭଞ୍ଜଜୟନ୍ତୀ ଆମକୁ ପ୍ରେରଣା ଦେଉ—ମାତ୍ର ଏହା ଏକ ଉତ୍କଳ-ସୁଲଭ "ହୋ"ରେ ପରିଣତ ନ ହୋଇ-ରାଉରକେଲାଠାରୁ କୁଜଙ୍ଗଯାଏ "ପୁରାଣବର୍ତ୍ତା ସପ୍ତାହ" ପାଳିତ ହେଉ ଶାରଳା ଓ ବଳରାମଙ୍କପାଇଁ । "ଭାଗବତ ସପ୍ତା" ଅନୁଷ୍ଠିତ ହେଉ ଜଗନ୍ନାଥ, ଭୂପତି, ଅଚ୍ୟୁତାନନ୍ଦଙ୍କପାଇଁ, ଅଷ୍ଟପ୍ରହରୀ-ସଂକୀର୍ତ୍ତନ ଓ ଭଜନ-ଉତ୍ସବମାନ ଆଚରିତ ହେଉ ଅଭିମନ୍ୟୁ, ଭକ୍ତଚରଣ, କବିସୂର୍ଯ୍ୟ ଓ ଭୀମଭୋଇଙ୍କପାଇଁ । ପ୍ରାଜ୍ଞ ଓ ବିଜ୍ଞ ଅଧ୍ୟାପକ ସାହିତ୍ୟିକଗଣ ସେଥିରେ ବି ଅଂଶ ଗ୍ରହଣ କରନ୍ତୁ । ଆସ୍ୱାଦନା ହେଉ, ଆଲୋଚନା ମଧ୍ୟ ହେଉ । ତା'ହେଲେ ଯାଇ ଜାତୀୟସାଂସ୍କୃତିକ-ପ୍ରାଣ-ବନ୍ୟାର ଉଚ୍ଛ୍ୱଳ ମହାପ୍ଲାବନରେ ଚତୁର୍ଦ୍ଦିଗ ଦିଶିବ "ଚଳିକାମୟ" ।



# ମାତୃଭାଷା ଓ ସାହିତ୍ୟଭାଷା

ଆମର ଅଧିକାଂଶ ଛାତ୍ର ଓ ଅଭିଭାବକଙ୍କ ମନରେ ସେମାନଙ୍କ ଅଗୋଚରରେ ଗୋଟିଏ ଧାରଣା ରହିଛି—ମାତୃଭାଷା ଓ ସାହିତ୍ୟ ଏକାକଥା । ଏସମ୍ପର୍କରେ ସଚେତନ ନ ହେଲେ ଏହା ଏକ ମାରାତ୍ମକ ଭ୍ରମ । ମାତୃଭାଷାର ସିଧା ଅର୍ଥ ହେଲା— ମା ଆମକୁ ଯେଉଁ ଭାଷା ଶିଖାଇଛି । ମା' ଶିଖା ଭାଷା ହେଉଛି ସାଧାରଣଭାବେ ବ୍ୟାବହାରିକ ଭାଷା । ଭାତ, ମାଛ, ଶାଗ, ଆଳୁ ଆଦି କେତେକ ବିଶେଷ୍ୟ ପଦ— ଭଲ, ମନ୍ଦ, ସୁଆଦିଆ ଆଦି କେତେକ ବିଶେଷଣ—ପଢ଼ିବା, ଶୋଇବା, ଖାଇବା, ଗାଧୋଇବା ଆଦି କେତେକ କ୍ରିୟା—ବାସ୍—ମାତୃଭାଷା ପରିପୂର୍ଣ୍ଣ । ଏହି ଶବ୍ଦ-ଗୁଡ଼ିକର ଅର୍ଥ ଓ ବ୍ୟବହାର ଆମେ ଜାଣୁ, ମାତ୍ର ଏତିକି ଶବ୍ଦ ଓ ଏତିକି ଅର୍ଥରେ କ'ଣ ସାହିତ୍ୟ ଚଳେ ? ଖାଲି ସାହିତ୍ୟ ନୁହେଁ—ଦର୍ଶନ, ବିଜ୍ଞାନ, ଅର୍ଥନୀତି, ରାଜନୀତି, କାରିଗରୀ କୌଣସି ବିଷୟ ଚଳେ ନାହିଁ । (ସାମଗ୍ରିକ ଅର୍ଥରେ ଏଗୁଡ଼ିକର ଭାଷାକୁ ମଧ୍ୟ ସାହିତ୍ୟିକ ଭାଷା କୁହାଯାଏ—ଅବଶ୍ୟ ରସ, ଧ୍ୱନି ଓ ଚମତ୍କାରିତାକୁ ବାଦ୍ ଦେଇ ।)

ଭାଷା ସଙ୍ଗେ କେବଳ ବ୍ୟବହାରର ସମ୍ପର୍କ ନାହିଁ—ଚିନ୍ତାର ସମ୍ପର୍କ ଅତି ନିବିଡ଼ । ଚିନ୍ତା ହେଉଛି ଅର୍ଥ । ଅନୁଭୂତି ଲାଗି ଭାଷାର ଆବଶ୍ୟକତା ନ ଥାଇପାରେ—ମାତ୍ର ଚିନ୍ତା ଲାଗି ଭାଷା ନ ହେଲେ ନ ଚଳେ । ଯାହାର ଚିନ୍ତା ଯେତିକି ମୌଳିକ ଓ ଉନ୍ନତ—ବୁଝିବାକୁ ହେବ ତା'ର ଭାଷା ମଧ୍ୟ ସେତିକି ମୌଳିକ ଓ ଉନ୍ନତ । ସାହିତ୍ୟ ଓ ଭାଷା ତେଣୁ ଏକା ବାଟରେ ଏକା ସାଙ୍ଗରେ ଉନ୍ନତ ହୁଅନ୍ତି ।

"ମାତୃଭାଷା" ବୋଲି ହେଉ ମନେ କରୁଥିବା ବାହାଦୁର ସବ୍ ଜାନ୍ତା-ମାନେ ବୁଝନ୍ତି ନାହିଁ ଯେ ସାହିତ୍ୟିକ ଓ ଦାର୍ଶନିକମାନେ ଆମ ମା'ର କୋଳରେ କଥା

କହନ୍ତି ନାହିଁ । ସେମାନଙ୍କ ଚିନ୍ତା ଭଳି ସେମାନଙ୍କ ଭାଷା ମଧ୍ୟ ମୌଳିକ ଓ ସ୍ୱତନ୍ତ୍ର ଅର୍ଥବାହୀ । ଆମକୁ ସେ ଭାଷା ଶିଖିବାକୁ ହେବ—ଯଦି ଆମେ ସେ ଚିନ୍ତା ସଙ୍ଗେ ପରିଚିତ ହେବାକୁ ଚାହୁଁ । ମନୀଷୀମାନଙ୍କ ଭାଷା ଶିକ୍ଷା ନ କଲେ ଉନ୍ନତ ଭାବ ଓ ଉନ୍ନତଚିନ୍ତା ଆମ ମୁଣ୍ଡକୁ ପଶିପାରିବ ନାହିଁ । କାରଣ ସେମାନଙ୍କ ଭାଷା ଏଭଳି ଭାବେ ଅର୍ଥଯୁକ୍ତ—ଯାହା ଅସାଧାରଣ ଭାବ ଓ ଚିନ୍ତାର ଦ୍ୟୋତନାରେ ପୂର୍ଣ୍ଣ । ପୁନଶ୍ଚ ଅସାଧାରଣ ପ୍ରୟୋଗ ଲାଗି ମଧ୍ୟ ସେ ଭାଷା ଉଦ୍ଦିଷ୍ଟ ଓ ନିୟୋଜିତ । ମାତ୍ର ମାତୃଭାଷା ତାର ଅର୍ଥରେ ଓ ପ୍ରୟୋଗରେ ନିହାତି ସାଧାରଣ ।

ଓଡ଼ିଆ ମାତୃଭାଷା ଯେଉଁ ଛାତ୍ର-ଛାତ୍ରୀମାନଙ୍କର ବା ଯେଉଁ ଅଭିଭାବକ ମାନଙ୍କର—ସେମାନେ ଏଇ କଥାଟି ବୁଝିଲେ ମାତୃଭାଷାର ସୀମାକୁ ଅତିକ୍ରମ କରି ସାହିତ୍ୟିକ ଭାଷା ଶିଖିବାରେ ବ୍ରତୀ ହେବେ । ଆଉ ମନୀଷୀମାନଙ୍କର ଭାଷା—ତାହା ବିନା ଆୟାସରେ କେବେ ହୁଏ ନାହିଁ ।

ଏ ପ୍ରସଙ୍ଗରେ ଅବଶ୍ୟ ଏଠି ଆଉ ଏକ ସୂଚନା ଦିଆଯାଇପାରେ । ଯେହେତୁ ମାତୃଭାଷା ଆମର ଭାବ ଓ ଚିନ୍ତାର ପ୍ରକାଶ ଓ ଆହରଣ ଲାଗି ପ୍ରାଥମିକ ମାଧ୍ୟମ—ସେହେତୁ ଆମର ମାତୃ-ଜାତି ସେମାନଙ୍କର ଭାଷାର୍ଜନ ସମ୍ବନ୍ଧେ ଖୁବ୍ ବେଶୀ ସଚେତନ ହେବା ଉଚିତ । ଆମ ମାତୃ-ଜାତିର ଭାଷା ଯଦି ମନୀଷୀମାନଙ୍କର ଭାଷାନୁସାରିଣୀ ହୁଏ—ତେବେ ଆମର ସାଧାରଣ ବ୍ୟାବହାରିକ ଭାଷା ମଧ୍ୟ ବହୁ ପରିମାଣରେ ଅଧିକ ଭାବୋଦ୍ଦୀପକ ଓ ଚିନ୍ତାଦ୍ୟୋତକ ହୋଇପାରିବ ।

ଆମର ମାଆମାନେ ଯଦି କେବଳ ଆଳୁ, ଭାତ, ଶାଗ, ମାଛ ଆଦି କେତୋଟି ବ୍ୟାବହାରିକ ଶବ୍ଦ ଛଡ଼ା—ଭାବବାଚକ ଭାଷା ନ ଶିଖିବେ—ତେବେ ସେମାନଙ୍କ ପିଲାମାନଙ୍କର ମାତୃଭାଷା କେବଳ ସେଇ ଆଳୁ, ବାଇଗଣ, ଶାଗ, ମାଛ ସ୍ତରର ମର୍ଯ୍ୟାଦା ପାଇ ରହିବ । ମାତୃମୁଖ-ନିଃସୃତ ଭାବବାଚକ ଶବ୍ଦଗୁଡ଼ିକର ଓ ବାକ୍ୟ-ବିନ୍ୟାସର ସଂଚରଣ କ୍ଷମତା ଖୁବ୍ ବେଶୀ ।

ତେଣୁ ଆମର ନାରୀମାନେ ଆମ ଭାଷାର ବଡ଼ ବଡ଼କବି, ଲେଖକ,ବୈଜ୍ଞାନିକ, ଦାର୍ଶନିକ ଓ ମନୀଷୀମାନଙ୍କର ଲେଖାମାନ ଅଭ୍ୟାସ କରି ପଢ଼ିବା ଉଚିତ । ତା'ହେଲେ ଯାଇ ଏଇ ଭାଷା-ମାଧ୍ୟମରେ ସେମାନଙ୍କର ଚେତନା ଯେମିତି ବିସ୍ତାରିତ ହୁଅନ୍ତା—ତଦନୁଯାୟୀ ସେମାନଙ୍କ ବ୍ୟବହୃତ ଚଳିତ ବ୍ୟାବହାରିକ ଭାଷା ମଧ୍ୟ ସେମିତି ହୁଅନ୍ତା ସୁନ୍ଦର, ସରସ, ଅର୍ଥପୂର୍ଣ୍ଣ ।

ଏ ଦଗରେ ଅନ୍ୟ ପ୍ରଦେଶର ମାଆମାନେ ଆମ ମାଆଙ୍କଠାରୁ ଅଧିକ ଉନ୍ନତ । ମାତୃଭାଷାର ଏହି ଦୁର୍ବଳତା ଯୋଗୁଁ ଆମର ସାଧାରଣ ପୁରୁଷସମାଜ ମଧ୍ୟ ଚଳିତ କଥାବାର୍ତ୍ତାରେ ଭାଷା ପ୍ରୟୋଗରେ ବଡ଼ ସ୍ଥୂଳ ଓ ରୁକ୍ଷ ।

ଓଡ଼ିଆ ଉପନ୍ୟାସରେ ସାଧାରଣତଃ ଦେଖାଯାଏ ନାୟକ-ନାୟିକାଙ୍କ ମଧ୍ୟରେ କଥାବାର୍ତ୍ତାର ଏକାନ୍ତ ଅଭାବ । ନାଟକରେ ମଧ୍ୟ ଆମର ବଚନିକାଗୁଡ଼ିକ ପ୍ରାୟଶଃ ଗୁରୁତ୍ୱହୀନ, ରସହୀନ, ଭାବହୀନ ଓ ବକ୍ରୋକ୍ତିବର୍ଜିତ । ଆବେଗପୂର୍ଣ୍ଣ ବାକ୍‌ବିଳାସ—ଚିନ୍ତାପୂର୍ଣ୍ଣ ବାକ୍‌ବିସ୍ତାର ଓ ଭାବ-ଶବଳ ବାକ୍‌ବୈଦଗ୍‌ଧ୍ୟ ଆମ ସାମାଜିକ ଜୀବନରେ ଯେମିତି ଅଭାବ—ଆମ ନାଟକ ଉପନ୍ୟାସରେ ବି ତତୋଽଧିକ ଅଭାବ; କିନ୍ତୁ ଏହା ମାନେ ନୁହେଁ ଯେ ଆମ୍ଭେମାନେ ସ୍ୱଭାବରେ ସଂଯତବାକ୍-ମିତଭାଷୀ । ଆମର ନରନାରୀମାନଙ୍କର କଥୋପକଥନ ଏତେ ଉଚ୍ଚକିତ କୋଳାହଳ ପୂର୍ଣ୍ଣ-କର୍କଶ ଓ କଳାଶୂନ୍ୟ ଯେ ତହିଁରୁ ଆମର "ଶବ୍ଦ" ଅପେକ୍ଷା "ରବ"ଟାଇ ବେଶୀ ବାର ହୋଇପଡ଼େ ।

ପୁରୁଷର ରୁଚି ବରାବର ନିର୍ଭର କରେ ନାରୀର ରୁଚି ଉପରେ । ଆମ ନାରୀମାନଙ୍କର ଉକ୍ତି ଯେତିକି କୋମଳ, ସୂକ୍ଷ୍ମ ଭାବବାଚକ ଓ ଇଙ୍ଗିତପୂର୍ଣ୍ଣ ହେବ—ପୁରୁଷଙ୍କ ପ୍ରତ୍ୟୁକ୍ତି ସେଇ ପରିମାଣରେ ଗମ୍ଭୀର, ରସୋତ୍ତୀର୍ଣ୍ଣ ଓ ଚିନ୍ତୋଦ୍ଦୀପକ ହୋଇଯିବ ଧ୍ରୁବ ଧ୍ରୁବ । ଜଗନ୍ନାଥ ଦାସ କହନ୍ତି—'କୋମଳ, ମଧୁର ବଚନ—କହି ତୋଷିବ ପ୍ରାଣୀମନ" । ବଚନର ଏହି କୋମଳତା, ମାଧୁର୍ଯ୍ୟ ଓ ତୋଷକାରିତା ଗୁଣ ଓଡ଼ିଆ ଭାଗବତ ପଦାବଳୀର ଯେପରି ଅତି ନିଜସ୍ୱ ଗୁଣ । ଓଡ଼ିଆଙ୍କ "ଜାତୀୟ ବଚନିକା"ର ଶୈଳୀ ଏହି ଭାଗବତ ପଦାନୁସରଣରେ ହେଲେ ଯାଇ ମର୍ଯ୍ୟାଦାଯୁକ୍ତ ହେବ । ଓଡ଼ିଆ ଭାଗବତର ଭାଷା ଶୈଳୀ କେବଳ କୋମଳ, ମଧୁର ଆଉ ତୋଷକାରୀ ବଚନ ବିନ୍ୟାସରେ ନାହିଁ—ଅଛି ମଧ୍ୟ ତାର ଭାବୋଦ୍ରେକ କ୍ଷମତାରେ—ଚିନ୍ତା ସଂକ୍ରମଣଶୀଳତାରେ—ଆଉ ଶ୍ରୋତାର ଚିତ୍ତପଟରେ ଏକାଧାରରେ ଅନୁଭବନୀୟ ଧ୍ୱନି ଓ ଛବି ଫୁଟାଇବାରେ । ଆମେ ସମସ୍ତେ ଭାଗବତୀ ଶୈଳୀରେ କଥାବାର୍ତ୍ତା କରନ୍ତେ ନାହିଁ ? କରିପାରନ୍ତେ ନାହିଁ ? ପାରନ୍ତେ ନିଶ୍ଚୟ ।

**ଆମର ଶିକ୍ଷିତ ବ୍ୟକ୍ତିଙ୍କ ଓଡ଼ିଆ ଭାଷା :**

୧ମ ବ୍ୟକ୍ତି—ବୁଝିଲୁ **brother** ! ମୋର **homeopathy**ରେ **confidence** ଆସିଗଲା ।

୨ୟ ବ୍ୟକ୍ତି—What do you mean ? ମାନେ କ'ଣ ତୁ କହୁଛୁ ? How is it ?

୧ମ—ମୋ fatherଙ୍କ left legରେ ଗୋଟାଏ boilଟା ହୋଇଥିଲା—କାଲି ସେଇଟା operation ହୋଇଥାନ୍ତା । Everything was ready । କିନ୍ତୁ fortunately କାଲି morningରେ ମୋର father-in-law ଆସି ପହଞ୍ଚିଲେ । Homoeopathyରେ ସେ ଜଣେ expert । ସେ ମାତ୍ର ଗୋଟାଏ dose medicine ଦେଇଥିଲେ—dose ମାନେ a little amount of sugar milk powder । father ତ firstରୁ refuse କରୁଥିଲେ—ସେ belive କରନ୍ତି ନ ଏଥିରେ । ସେ କହନ୍ତି—this is quackery । କିନ୍ତୁ mother insist କଲା No—No you have to take it । Father ତ motherକୁ ଜାଣନ୍ତି ସେ brother blood ଦେଖିଲେ faint ହୋଇଯିବ । ଭାରି nervous । Father କହନ୍ତି—ତା'ର ଏଇ nervous debility ବା fear complexଟା ତା'ର marriage ବେଳଠୁଁ ଥିଲା । ଏଇଟା ବୋଧହୁଏ ତା'ର heredetary disease । anyway-father ସେଇ ଗୋଟାଏ dose ଖାଇଲେ—ଠିକ୍ Eveningରେ । The whole night he had a sound sleep । ଆଜି morning ରେ ମୁଁ bedରୁ ଉଠିନି—ମୋ wife ଆସି କହିଲା cotton କୋଉ shelfରେ ଅଛି ? fatherଙ୍କ boilଟା କେତେବେଳେ burst କରିଯାଇଛି—ଇସ୍—ଏତିକି blood ! ଏତିକି Pus ! !

**ଆଉ ଗୋଟିଏ ବୌଦ୍ଧିକ ଆଲୋଚନାର ନମୁନା :**

୧ମ ବ୍ୟକ୍ତି—Last ସଙ୍କଳରେ ସୀତାକାନ୍ତ ବାବୁଙ୍କର ସେଇ Poem ଟା ପଢ଼ିଲେ ପ୍ରମୋଦ ବାବୁ ?

୨ୟ ବ୍ୟକ୍ତି—Excuse me ଭାଇ; ମୁଁ ତୁମମାନଙ୍କର ଏଇ modern poetry ଜମା tolerate କରିପାରେ ନା । no rhyme no rthythm କି curious image ! କି nonsense metaphor ! Languageର ତ question ହିଁ ନାହିଁ । What do they mean really ?

୩ୟ ବ୍ୟକ୍ତି—ପ୍ରମୋଦବାବୁ ; ଆପଣଙ୍କ taste ଟା ଏବେଯାଏ ବି up-to date ହେଲା ନାହିଁ । Modern poetry ଯେ ସବୁବେଳେ ଆପଣଙ୍କୁ

ଗୋଟାଏ Clear cut meaning ଦେବ-ସେଇ Bhanjian ମାନଙ୍କପରି —ତା' ଆପଣ Expect କରିବେ ନାହିଁ । ଆପଣଙ୍କ understanding ର angle of vision ଟା change କରିବାକୁ ହେବ । ଶୁଣନ୍ତୁ—Modern poetry meaning ଦିଏନା—meaning suggest କରେ । ଆପଣ abstract art ରେ ଦେଖିବେ—ସେଠି drawing ନାହିଁ । line ର definite meaning ଟା very often ଅତି superficial । line ଗୁଡ଼ାକ real meaning ଗୁଡ଼ିପଟେ ଗୋଟାଏ circle ଟାଣି ଦିଅନ୍ତି । ତାକୁ limited କରିଦିଅନ୍ତି । ତା' ଛଡ଼ା ଆମେ ତ object ର outward appearance—ଯୋଉଟା ହେଉଛି—କେବଳ line ଆଉ definite line ବା spots—ତାକୁ ଦେଖି ତା'ର inner meaning ଟା ପାଇବାକ ! object ର real meaning ଟା ହେଉଛି vague—obscure ଆଉ indefinite । ତାକୁ କେବଳ ଦେଖାଇ ହେବ differently mixed colours ବା sound ର juxtaposition ଦ୍ୱାରା କମ୍ବା ଆମର sub-conscious ବା unconcious mind ରୁ release ହୋଇ ଆମ conscious mind ରେ reflected ହୋଇଥିବା image ମାନଙ୍କଦ୍ୱାରା । ସୀତାକାନ୍ତବାବୁ ଆମର mythical consciousness ରେ reflected image ଗୁଡ଼ାକୁ ପ୍ରଚୁରଭାବେ catch କରିପାରନ୍ତି । ଆଉ—ଆମର social ବା anthropological experience ଗୁଡ଼ିକୁ exploit କରି ଏତେ ଚମତ୍କାରଭାବେ word ଆଉ sentence ଗୁଡ଼ିକ arrange କରି ଦିଅନ୍ତି ଯେ ତାଙ୍କର ଯାହା intention—ସେଇଟା ଆମେ ଧରିନେଉ ବା ବୁଝିପାରୁ ଆମର experience ବା feeling କୁ utilise କରି ।

ପାଠକେ ! ଅଳମତିବିସ୍ତରେଣ । ଏତିକରୁ ଆମର ମାତୃଭାଷାର ପରିଚୟ ମିଳିଯିବ । ଆମର ବିଶ୍ୱାସ—ଉପରେ ଯେଉଁ କଥାଗୁଡ଼ିକ କୁହାଯାଇଛନ୍ତି—ସେଗୁଡ଼ିକର ଓଡ଼ିଆ ପ୍ରତିଶବ୍ଦ ନିଶ୍ଚୟ ସୁଲଭ । ଫାଦର, ମଦର, ବଏଲ୍ ‧ ଠାରୁ ଆରମ୍ଭକରି ଜକ୍‌ସଟାପୋଜିସନ୍ ବା ଆନ୍ଥ୍ରୋପୋଲୋଜିକାଲ ଏକ୍‌ସପିଅରେନ୍‌ସ ପର୍ଯ୍ୟନ୍ତ—କୌଣସିର ପ୍ରତିଶବ୍ଦ ଆମର ଅଜଣା ନୁହେଁ—ବା ଅଶାସ୍ତ୍ରୀୟ ନୁହେଁ ବା ଅସୁନ୍ଦର ଶୁଭିବନାହିଁ । କେବଳ ଏକ ଅବହେଳା, ଅବଜ୍ଞା, ଅସାବଧାନତା, ବିଶୃଙ୍ଖଳା, ( ଓ କେତେକାଂଶରେ ଦାସ୍ୟ ହୀନତା ) ଆମକୁ ଗ୍ରାସିଯାଇଛି ଓ ଆମ ଭାଷାକୁ ଏମିତି ଏକ ବର୍ଣ୍ଣସଙ୍କରସ୍ୱ ରୂପ ଦେଇଛି ।



# ଓଡ଼ିଆ ସାହିତ୍ୟିକ ଓ ସମାଲୋଚକ

ନିକଟରେ ଓଡ଼ିଶା ବାହାରେ ପ୍ରକାଶିତ ଏକ ଇଂରାଜୀ ପତ୍ରିକାର ଗୋଟିଏ ପ୍ରବନ୍ଧକୁ ନେଇ କେତେକ ସ୍ୱନାମଧନ୍ୟ ଲେଖକଙ୍କ ସଙ୍ଗେ ମୌଖିକ ଆଲୋଚନା ହେଲା । ସେମାନଙ୍କ ଅଭିଯୋଗର ବିଷୟ ହେଲା—ଚଳିତ ଓଡ଼ିଆ ସାହିତ୍ୟ ସଂପର୍କରେ ଇଂରାଜୀରେ ଯାହା କିଛି ପ୍ରବନ୍ଧ ଲେଖା ଯାଉଛି ଓ ଓଡ଼ିଶା ବାହାରେ ପ୍ରକାଶ ପାଉଛି, ସେଗୁଡ଼ିକରେ ସମାଲୋଚକମାନଙ୍କର ପକ୍ଷପାତିତା, ଏକଦେଶଦର୍ଶିତା ଓ ଅଜ୍ଞତା ବରାବର ଲକ୍ଷ୍ୟ କରାଯାଉଛି । ଉକ୍ତ ଇଂରାଜୀ ପତ୍ରିକାରେ ଜଣେ ବିଶିଷ୍ଟ ଇଂରାଜୀ ସାହିତ୍ୟ-ଅଧ୍ୟାପକ ଓଡ଼ିଆ କ୍ଷୁଦ୍ରଗଳ୍ପ ଉପରେ ଏକ ପ୍ରବନ୍ଧ ଲେଖିଛନ୍ତି ଏବଂ ସେଥିରେ ସେ କେତେକ ବିଶିଷ୍ଟ ଗାଳ୍ପିକଙ୍କ ନାମୋଲ୍ଲେଖ ମଧ୍ୟ କରି ନାହାନ୍ତି । ଅଭିଯୋଗକାରୀ ସ୍ୱନାମଧନ୍ୟ ଲେଖକମାନଙ୍କର ମତରେ ଏତଦ୍ଦ୍ୱାରା ପ୍ରବନ୍ଧଟି ତ ସର୍ବାଙ୍ଗ ସଂପୂର୍ଣ୍ଣ ହେଲା ନାହିଁ—ଅପରନ୍ତୁ ଏଥିରେ ପରିତ୍ୟକ୍ତ ଗାଳ୍ପିକମାନଙ୍କ ପ୍ରତି ମଧ୍ୟ ଅନ୍ୟାୟ କରାଯାଇଛି ।

ଏହି ଅଭିଯୋଗ ଆଜି ନୂଆ ନୁହେଁ । ପ୍ରଦେଶ ବାହାରେ ଆଧୁନିକ ଓଡ଼ିଆ ସାହିତ୍ୟର ପରିଚୟ ଆରମ୍ଭ ହେଲାଦିନୁଁ ଇଂରାଜୀରେ ଲେଖିପାରୁଥିବା ସମାଲୋଚକମାନଙ୍କ ବିରୁଦ୍ଧରେ ଏହି ଅଭିଯୋଗ ସର୍ବଦା ଶୁଣାଯାଇ ଆସିଛି—ଏବଂ ଏଥିପାଇଁ କେତେକ ସ୍ଥଳରେ ତୁମୁଳ ଆନ୍ଦୋଳନ ମଧ୍ୟ ହୋଇଯାଇଛି ପତ୍ରପତ୍ରିକାରେ ଓ ସଭାସମିତିରେ ।

ଅନ୍ୟ ପକ୍ଷରେ ସମାଲୋଚକଙ୍କର ମତ ହେଲା—ତାଙ୍କର ଆଲୋଚନାରେ ସେ କେଉଁ ଲେଖକଙ୍କୁ ଛାଡ଼ିବେ ଓ କାହାକୁ ସ୍ଥାନ ଦେବେ—ଏହା ତାଙ୍କର ସଂପୂର୍ଣ୍ଣ ବ୍ୟକ୍ତିଗତ ବିଚାରନିର୍ଭର ବ୍ୟାପାର । କିଏ ତୁଷ୍ଟ ହେବ ବା କିଏ ରୁଷ୍ଟ ହେବ—ଏଥିରେ ତାଙ୍କର କିଛି ଭାବିବାର ନାହିଁ । ତାଙ୍କର ରସବୋଧ, ରୁଚିବୋଧ, ଜ୍ଞାନ ଓ ବିଚାରପ୍ରଣାଳୀର ମାନଦଣ୍ଡ ଉପରେ ତାଙ୍କୁ ଅବଶ୍ୟ ନିର୍ଭର କରିବାକୁ ହେବ ।

କିନ୍ତୁ ଏ ସମ୍ପର୍କରେ ନିରପେକ୍ଷଭାବେ ଆଲୋଚନା କଲେ କେତେକ ବିଷୟ ମୁଣ୍ଡକୁ ଆସେ । ପ୍ରଥମ କଥା—ଓଡ଼ିଆ ସାହିତ୍ୟ ସମ୍ପର୍କରେ ଇଂରାଜୀରେ ସମାଲୋଚନା ଲେଖୁଥିବା ଲେଖକଗଣ ଓଡ଼ିଆ ଭାଷା ଓ ସାହିତ୍ୟରେ ସମ୍ୟକ୍ ବ୍ୟୁତ୍ପତ୍ତି ଲାଭ କରୁଛନ୍ତି ତ ? ପ୍ରତ୍ୟେକ ପ୍ରସିଦ୍ଧ ସାହିତ୍ୟ ପତ୍ରିକାରେ ପ୍ରକାଶିତ ଓ ପ୍ରଶଂସିତ ହେଉଥିବା ଲେଖାମାନଙ୍କ ସମ୍ବନ୍ଧେ ସମ୍ପୂର୍ଣ୍ଣ ଅବଗତ ରହୁଛନ୍ତି ତ ? ପ୍ରତିବର୍ଷ ଯେଉଁ କେତୋଟି ଗଳ୍ପସଙ୍କଳନ, କବିତାସଙ୍କଳନ, ନାଟକ ଓ ଉପନ୍ୟାସ ପ୍ରକାଶ ପାଇ ପାଠକମହଲରେ କିଞ୍ଚିତ୍ ଆଲୋଡ଼ନ ସୃଷ୍ଟି କରୁଛନ୍ତି—ସେଗୁଡ଼ିକୁ ସମ୍ୟକ୍‌ଭାବେ ସେମାନେ ଅନୁଶୀଳନ କରୁଛନ୍ତି ତ ? ବର୍ତ୍ତମାନର ଆନ୍ତର୍ଜାତିକ ପରିସ୍ଥିତିର ପୃଷ୍ଠଭୂମିକାରେ ପକାଇ ଏ ଜାତିର ନୈତିକ, ରାଜନୈତିକ, ଆର୍ଥନୈତିକ ଓ ସାହିତ୍ୟିକ ପରିସ୍ଥିତିକୁ ସ୍ୱତନ୍ତ୍ରଭାବେ ଅନୁଧ୍ୟାନ କରିଛନ୍ତି ତ ? ଏ ଦେଶର ଓ ଏ ଜାତିର ମଧ୍ୟ ବର୍ତ୍ତମାନ ପରିସ୍ଥିତିରେ ଏକ ସ୍ୱତନ୍ତ୍ର ସମସ୍ୟା ଅଛି—ପୁଣି ସେ ସମସ୍ୟାକୁ ଏ ଜାତିର ଲେଖକଗଣ ବ୍ୟକ୍ତିଗତଭାବେ ଓ ସାମୂହିକଭାବେ କିପରି ସମ୍ମୁଖୀନ ହୋଇଛନ୍ତି ଓ କି ପ୍ରକାର ପ୍ରତିକାର ବା ପ୍ରତ୍ୟୁତ୍ତର ଦେଇଛନ୍ତି—ଏବଂ ବିଶ୍ୱସମସ୍ୟା ପ୍ରତି ଆମର ଲେଖକଗଣ କିପରିଭାବେ ପ୍ରତିକ୍ରିୟାଶୀଳ – ସେସବୁକୁ ବିଶେଷଭାବେ ଏବଂ ସମୂହଭାବେ ବିଚାର କରି ତୁଳି ଅଛନ୍ତି ତ ?

କିନ୍ତୁ ପ୍ରାୟଶଃ ଦେଖାଯାଇଛି—ଅଧିକାଂଶ ସମାଲୋଚକ ମୂଳରୁ ଧରି ନେଇଛନ୍ତି ଯେ – ଆଧୁନିକ ଓଡ଼ିଆସାହିତ୍ୟରେ ବିଶେଷ କିଛି ଭଲ ଲେଖା ବାହାରୁ ନାହିଁ । ଅତଏବ ଏଗୁଡ଼ିକୁ ଅକ୍ଳେଶରେ ଏପରିକି ଅବହେଳାରେ ଅବଲୀଳାକ୍ରମେ ବିଛଣା ଉପରେ ପଡ଼ି ଦିଆଯାଇପାରେ ଓ ସେମାନଙ୍କ ସମ୍ପର୍କରେ ଯାହାକିଛି ତତ୍‌କ୍ଷଣାତ୍ ମୁଣ୍ଡକୁ ଜୁଟିଗଲା—ତାହା ବ୍ୟକ୍ତ କରି ଦିଆଯାଇପାରେ । ଏପରି ମଧ୍ୟ ଜଣାଯାଇଛି ଯେ କେତେକ ଇଂରାଜୀଭାଷାଭିଜ୍ଞ ସମାଲୋଚକ ଅଛନ୍ତି—ଯେଉଁମାନେ କି ଇଂରାଜୀ ପତ୍ର-ପତ୍ରିକାରେ ପ୍ରବନ୍ଧାଦି ଲେଖି କିଛି ରୋଜଗାର ମଧ୍ୟ କରନ୍ତି; କିନ୍ତୁ ସେ ସମାଲୋଚ୍ୟ ଓଡ଼ିଆ ବହିଟିକୁ ସମସ୍ତ ନଷ୍ଟ କରି ପଢ଼ନ୍ତି ନାହିଁ । ତାଙ୍କୁ ଉପନ୍ୟାସଟିର କଥାବସ୍ତୁ କହି ଦେବାକୁ ହୁଏ – ଚରିତ୍ରମାନଙ୍କ ନାମ ଧାମ ଟିପି ଦେବାକୁ ହୁଏ ଓ ଲେଖକ-ଆଡ଼ୁ ଆପଣା ଲେଖା ସମ୍ପର୍କରେ କିଛି ମନ୍ତବ୍ୟ ଓଡ଼ିଆଭାଷାରେ ଯୋଗାଇ ଦେବାକୁ ହୁଏ । ତା'ପରେ ସେ ତାକୁ ନେଇ ଇଂରାଜୀ ଭାଷାରେ ଲେଖି ବହୁଳ ପ୍ରଚାରିତ ଇଂରାଜୀ ପତ୍ରିକାରେ ପ୍ରକାଶ କରି ଦିଅନ୍ତି । ଫଳରେ ଓଡ଼ିଆ ଲେଖକଟି ବିଚାରା ନିଜ ନାମ ଓ କୀର୍ତ୍ତି ଇଂରାଜୀ ଭାଷାରେ—ଇଂରାଜୀ ଅକ୍ଷରରେ ଦେଖି ଧନ୍ୟାତ୍‌ଧନ୍ୟ, ମନେ କରେ । ଏହି ସମାଲୋଚକଙ୍କ ପାଖେ ସେଥିଲାଗି ବହୁ ଯଶକାଙ୍ଗାଳ ଓଡ଼ିଆ ଲେଖକ ଆପ୍ରଭାତସନ୍ଧ୍ୟା ଧାରଣା ଦେଇଥାନ୍ତି । ଏହିଭଳି

ସମାଲୋଚକ ମଧ୍ୟ ବ୍ୟବହାର କରିବା ଲାଗି କେତେକ କୋଠ-ଭଣ୍ଡାର-ଭୁକ୍ତ ଇଂରାଜୀ ଶବ୍ଦ ଟେବୁଲ ଉପରେ ଟିପି ରଖିଥାନ୍ତି ଏବଂ ସେଇ ଶବ୍ଦଗୁଡ଼ିକ ଯେ କୌଣସି ଓଡ଼ିଆ ଲେଖକ ପଛରେ ଲଗାଇଦେଲେ ଓଡ଼ିଆ-ଲେଖକଟି ମନ୍ତ୍ର-ଶକ୍ତି-ପ୍ରାପ୍ତ ହେଲପରି ଉଚ୍ଛାଟିତ ହୋଇ ଉଠେ । ଏଭଳି କ୍ଷେତ୍ରରେ ଇଂରାଜୀ ଭାଷାରେ ଲେଖୁଥିବା ସମାଲୋଚକ ଜଣେ ଚତୁର ଯାଦୁକର ଓ ତାଙ୍କ ସଙ୍ଗେ ଯଣ ବାଟେ ଜୀବନୀଶକ୍ତି ଗ୍ରହୁଁ ଥିବା ଓଡ଼ିଆ ଲେଖକଟିର ଗୋଟିଏ ବ୍ୟାବସାୟିକ ଚୁକ୍ତି ଥାଏ—ଯାହାକୁ ବୁଝାମଣା ଭାବିବା ଭୁଲ୍ ହେବ; କିନ୍ତୁ ଏ କ୍ଷେତ୍ରରେ ଆମ୍ଭମାନଙ୍କର ବିଶେଷ କିଛି କହିବାର ନାହିଁ ।

ଆଉମଧ୍ୟ— ଜଣେ ସମାଲୋଚକ ତାଙ୍କ ମନକୁ ପାଉଛି ବୋଲି କୌଣସି ଲେଖକ ବା ତାଙ୍କ ଲେଖା ଉପରେ ଯଦି ଇଂରାଜୀ ଭାଷାରେ କୌଣସି ସମାଲୋଚନା ଲେଖି ବାହାରେ ପ୍ରକାଶ କରନ୍ତି—ସେଥିରେ ମଧ୍ୟ ଅନ୍ୟ ଲେଖକମାନଙ୍କର ମୁଣ୍ଡବ୍ୟଥା ହେବାର କୌଣସି କାରଣ ନାହିଁ ।

କିନ୍ତୁ ପ୍ରଶ୍ନ ଉଠୁଛି—ଯଦି ଆମ ସାହିତ୍ୟ ସମ୍ପର୍କରେ କୌଣସି ତୁଳନାତ୍ମକ ଆଲୋଚନା ବା ଐତିହାସିକ ଆଲୋଚନା ବାହାରେ ଭିନ୍ନ ଭାଷାରେ ପ୍ରକାଶ କରିବାକୁ ପଡ଼େ—ତେବେ ଭିନ୍ନଭାଷାରେ ଲେଖୁଥିବା ସମାଲୋଚକଙ୍କର କର୍ତ୍ତବ୍ୟ କ'ଣ ହେବା ଉଚିତ ? ଯେ କୌଣସି ଐତିହାସିକର ନିରପେକ୍ଷତା ଏକ ପ୍ରଧାନ ଗୁଣ – ଯାହାକି ତାଙ୍କର ବ୍ୟକ୍ତିଗତ ରୁଚି ଅରୁଚି ଉପରେ ଆଦୌ ନିର୍ଭର କରେ ନାହିଁ । ଐତିହାସିକ ଦୃଷ୍ଟିରୁ ସମାଲୋଚନା କରିବାକୁ ଗଲାବେଳେ ସାଧାରଣ ଓ ଅସାଧାରଣ ଲୋକମତ ଉପରେ ଦୃଷ୍ଟି ରଖିବାକୁ ହେବ । ମୋତେ ଉପେନ୍ଦ୍ର ଭଞ୍ଜ ରୁଚିକର ହୁଅନ୍ତି ନାହିଁ ବୋଲି ଓଡ଼ିଆ କାବ୍ୟ ସାହିତ୍ୟର ଇତିହାସ ଲେଖିଲାବେଳେ ଉପେନ୍ଦ୍ର ଭଞ୍ଜଙ୍କର ଅନୁରାଗୀ ପାଠକ-ପାଠିକାମାନଙ୍କ ମନ୍ତବ୍ୟ ପ୍ରତି ବେଖାତିର୍ କରି ତାଙ୍କୁ ବାଦ ଦେଇଦେବା ବା ନ୍ୟୁନ କରିଦେବା ଐତିହାସିକ ଆଲୋଚନାରେ ଏକ୍‌ବାର୍ ଅଚଳ । ଅବଶ୍ୟ ପ୍ରତ୍ୟେକ ସମାଲୋଚକଙ୍କର ନିଜସ୍ୱ ମତବ୍ୟକ୍ତ କରିବାର ଅଧିକାର ଅଛି— ମାତ୍ର ତାହା ଅନ୍ୟମାନଙ୍କର ମତାମତ ଉଲ୍ଲେଖ କରିସାରିବା ପରେ । ତା'ଛଡ଼ା ମଧ୍ୟ—ସମାଲୋଚକ ସାହିତ୍ୟର ଐତିହାସିକ ବିବର୍ତ୍ତନ ଦେଖାଇଲା ବେଳେ, କେଉଁ କବିଙ୍କୁ କେତେ ସ୍ଥାନ ଦେବେ ତାହା ମଧ୍ୟ ତାଙ୍କ ନିଜ ବିଚାର ଉପରେ ନିର୍ଭରକରେ । ନୂତନ ଲେଖକମାନଙ୍କର କୌଣସି ବହି ବିଖ୍ୟାତ ହେଲା-ବେଳେ ଏକ ବିବାଦମାନ ସଙ୍କଟ ମଧ୍ୟ ଦେଇ ଗତି କରିଥାଏ ଏବଂ ଉକ୍ତ ବହିଟି ସମ୍ପର୍କରେ ଏଇ "କେତେ ନିନ୍ଦା କେତେ ପ୍ରଶଂସାମୂଳକ" ବିବାଦ-ମାନତା ହିଁ ବହିଟିର ଶକ୍ତିଶୀଳତାର ଲକ୍ଷଣ । ନୂତନ ଲେଖକ ବିଷୟରେ ମଧ୍ୟ ଏହି

କଥା ପ୍ରଯୋଜ୍ୟ । ଏପରି କ୍ଷେତ୍ରରେ ସମାଲୋଚକ ଉକ୍ତ ବନ୍ଧୁ ବା ଲେଖକଙ୍କୁ ନିଜ ଦୃଷ୍ଟିପଥଗାମୀ କରିବା ଉଚିତ । ନିଜ ଲେଖାରେ ଉଲ୍ଲେଖ କରିବା ଉଚିତ ଓ ତା ସଙ୍ଗେ ସଙ୍ଗେ ସ୍ୱାଧୀନଭାବେ ବିଚାର କରି ନିଜର ସ୍ୱାଧୀନ ମତ ଦେବା ଉଚିତ । ମାତ୍ର "ବିଚାର" କରିବାକୁ ହେଲେ ସମାଲୋଚକ ଉଦାର ଚିତ୍ତରେ ଚଳିତ ଓ ପ୍ରଚଳିତ ପ୍ରତ୍ୟେକ୍ ଲେଖକର ଲେଖା ସଙ୍ଗେ ପରିଚିତ ନ ହେଲେ କିପରି ହେବ ? ନିଜର ଖିଆଲ ଖୁସିରେ—ବା କୌଣସି ମତାନ୍ଧତାରେ କିମ୍ବା ଏକ ବିଚିତ୍ର ଅନମନୀୟ ଅନିଚ୍ଛୁକତାର ବଶବର୍ତ୍ତୀ ହୋଇ କିମ୍ବା ପଣ୍ଡିତମନ୍ୟତାରେ—କିମ୍ବା ଆଗରୁ ଧରି ନେଇଥିବା ଏକ ଧାରଣାକୁ ମନଭିତରେ ଜାବୁଡ଼ି ଧରି—କିମ୍ବା ବ୍ୟକ୍ତିଗତ ଘୃଣା-ବିଦ୍ୱେଷରେ କୌଣସି ବିଶିଷ୍ଟ ଲେଖକଙ୍କୁ ଅବହେଳା ଦେଖାଇବାଠାରୁ ନିଷ୍ଠୁରଣ ନିର୍ମମତା ବା ଅଜ୍ଞାନ ଅନ୍ଧତା ଆଉ ନାହିଁ ।

## ପ୍ରଶଂସା କୃପଣ ଓ ପ୍ରଶଂସା କାଙ୍ଗାଳ :

ଲେଖକମାନେହିଁ ପ୍ରଶଂସା ପ୍ରିୟ । ପ୍ରଭେଦ ହେଉଛି ଏହି ନିବେଦନ କାହାର ସରବ—କାହାର ବା ନୀରବ । ଆପଣା ହୃଦୟର କଥା ନିଜଲେଖାଭିତରେ କହିଥିବା ଲେଖକଟି ଜାଣିବାକୁ ଚାହେଁ—ଅନ୍ୟଜଣେ ତା' ହୃଦୟରେ ସେଇ କଥାଟିକୁ ସେଇ ଭାବଟିକୁ ବା ସେଇ ଚିନ୍ତାଟିକୁ ଧରି ପାରିଛି କି ନାହିଁ । କୌଣସି ସମାନଧର୍ମୀ ସହୃଦୟ ପାଠକଙ୍କଟି ମୁଖରୁ ତା' ଲେଖାର ପଂକ୍ତି ବା ଭାବ ଉଦ୍ଧୃତ ହେଲେ—ବା ସେଥିଯୋଗୁଁ ପ୍ରଶଂସା ଶୁଣିଲେ—ଲେଖକ ଭାବେ ତା'ର ଲେଖା ସାର୍ଥକ ହେଲା । ଯଥାର୍ଥ ପାଠକ ଏଭଳି ପ୍ରଶଂସାରେ ଯେମିତି ମୁଖର—ଯଥାର୍ଥ ଲେଖକ ମଧ୍ୟ ଏ ଭଳି ପ୍ରଶଂସା ଶୁଣିବାକୁ ଉତ୍‌କଣ୍ଠ ।

ମାତ୍ର ଯଶ ଓ ପ୍ରଶଂସା ଏକାକଥା ନୁହେଁ । ଯଶପାଇଁ ବ୍ୟାକୁଳତା କେବଳ ମନ୍ଦକବିମାନଙ୍କର । ଏହି "ମନ୍ଦ" ଲେଖକର ଲେଖା ଭିତରେ ଥାଇ-ପାରେ—ବା ତା'ର ବ୍ୟକ୍ତିତ୍ୱ ଭିତରେ ଥାଇପାରେ । ଯଶଲାଗି ବ୍ୟାକୁଳତା ନିଶ୍ଚିତ-ଭାବେ ଗୋଟିଏ ଅପାରଗ ମନର, ଅଭିମାନୀ ମନର କିମ୍ବା ଗୋଟିଏ କ୍ଷୁଦ୍ରମନର ହିଂସ୍ରଦାବୀ । ଅଗଣିତ ଲୋକ ମାରି—ଜନପଦଗୁଡ଼ିକୁ ଶ୍ମଶାନତ କରି ବୀର-ଯଶ ପାଇବା—କିମ୍ବା ଅନ୍ୟକୁ ଦଳି ପ୍ରତାରିତ କରି କ୍ଷମତା-ଯଶ ପାଇବା—କିମ୍ବା ଅନ୍ୟକୁ ବଞ୍ଚିତ ଓ ଲୁଣ୍ଠିତ କରି ଧନ-ଯଶ ପାଇବା ଭଳି ଏହା ହିଂସ୍ର ଓ ମାରାତ୍ମକ । କୌଣସି ସତ୍ ଲେଖକ ପକ୍ଷରେ ଏହା ଶୋଭନୀୟ ନୁହେଁ କି ସ୍ପୃହଣୀୟ ନୁହେ ।

କିନ୍ତୁ ଏଣ୍ଟାବୋଲ୍ ସାମାଜିକ ସମାଲୋଚକ, ଏଇ ଆଳରେ କୌଣସି କୃତବିଦ୍ୟ ଲେଖକଙ୍କୁ ତା'ର ପ୍ରାପ୍ୟ ଯଶ ପ୍ରଦାନ କରିବାରେ କୁଣ୍ଠିତ ହେବା ଆହୁରି ଅଶୋଭନୀୟ । କାରଣ ସତ୍‌ଲେଖକ ଯେମିତି ଯଶ-କାଙ୍ଗାଳ ନୁହନ୍ତି—ସତ୍‌ସମାଲୋଚକ ସେମିତି ଯଶ-ଦାନ କୃପଣ ମଧ୍ୟ ନୁହନ୍ତି ।

ଆମର ଜାତୀୟ ଚରିତ୍ରରେ ପ୍ରଶଂସା କରିବାରେ ଏକ କୁଣ୍ଠିତ କାର୍ପଣ୍ୟ କେମିତି କେଜାଣି କୋଉ ଖଞ୍ଜରେ ରହି ଯାଇଛି । ଏଣେ ପୁଣି ପ୍ରଶଂସା ପାଇବାର ବ୍ୟାକୁଳତା ମଧ୍ୟ ଆମ ଭିତରକୁ କୁଆଡ଼ୁ କେମିତି ପଶିଆସିଲାଣି । ଲିଙ୍ଗରାଜ ମନ୍ଦିର ହଜାର ବର୍ଷ ତଳେ କେଉଁ ରାଜା ତୋଳାଇ ଥିଲେ—ବା କେଉଁ କେଉଁ ଶିଳ୍ପୀ ସେଥିରେ କେଉଁ କେଉଁ ମୂର୍ତ୍ତି ନିର୍ମାଣ କରିଥିଲେ—ତାଙ୍କର ବା ସେମାନଙ୍କର ନାମ ମନ୍ଦିରର କୌଣସି ବିଶିଷ୍ଟ ସ୍ଥାନରେ ଶିଳାଲିପିତ ହେବାର ଦେଖାଯାଏ ନାହିଁ । ଅଥଚ ଉଣେଇଶି ଶହ କେତେ ମସିହାରେ କୋଉ ମୁଖ୍ୟମନ୍ତ୍ରୀଙ୍କ ଅମଳରେ ତାହା ବିଦ୍ୟୁତାଲୋକିତ ହେଲା—ତାଙ୍କର ନାମ ଜଗମୋହନର ସମ୍ମୁଖ ଭାଗରେ ଶୁଭ୍ରଯଶ ବିଚ୍ଛୁରିତ କରୁଅଛି । କୌଣସି ମହତ୍ତ୍ୱର ସାର୍ବଜନୀନ ସତ୍ୟ ପ୍ରତିଷ୍ଠାରେ ବା କଲ୍ୟାଣ ପ୍ରତିଷ୍ଠାରେ ବା ସୌନ୍ଦର୍ଯ୍ୟ ପ୍ରତିଷ୍ଠାରେ ପ୍ରତିଷ୍ଠାତା ଜଣେ ମାଧ୍ୟମ ମାତ୍ର । ସେଥିଲାଗି ଯଶଦାବୀ କରିବା ଆଧ୍ୟାତ୍ମିକ ଦୃଷ୍ଟିରୁ ଯେମିତି ମୂଢ଼ତା, ସମାଜବାଦୀ ଦୃଷ୍ଟିରୁ ମଧ୍ୟ ସେମିତି ଅଯଥାର୍ଥ ।

ଯେ କୌଣସି ଭଲ ଲେଖା—କେବଳ ସମାଲୋଚକର ନିନ୍ଦା ବା ପ୍ରଶଂସା ଦ୍ୱାରା ଆଦୃତ ଅନାଦୃତ ହୁଏ ନାହିଁ—ଯଦିଓ କେବଳ ପ୍ରଚାରଦ୍ୱାରା ବହୁ ମନ୍ଦକବି ଯଶମୁକୁଟ ପିନ୍ଧି ନିଜ ଜୀବନକାଳରେ ବହୁ ସାଂସାରିକ ସୁଖ ସୁବିଧା ଭୋଗ କରିଯା'ନ୍ତି । ଅନ୍ୟପକ୍ଷରେ ବହୁ ଭଲ କବି ସେହି ପ୍ରଚାରଟିର ଅଭାବରେ ସାଂସାରିକ ବହୁ ସୁଖ ସ୍ୱାଚ୍ଛନ୍ଦ୍ୟରୁ ବଞ୍ଚିତ ହୋଇ ଅପଯଶର ମୁକୁଟ ପିନ୍ଧି ଜୀବନକାଳରେହିଁ ଜୀବନ୍ମୃତଦଶା ଭୋଗ କରିବାକୁ ବାଧ୍ୟ ହୁଅନ୍ତି । ନିନ୍ଦା ପ୍ରଚାରରେ କାବ୍ୟ ହୁଏତ କିଛିକାଳ ଅନାଦୃତ ହୋଇ ଯାଇପାରେ—ମାତ୍ର ଭବିଷ୍ୟତରେ କେତେଦିନ ସେହି ନିନ୍ଦିତ କାବ୍ୟଟିର ସୌଭାଗ୍ୟ ହୁଏତ ଫେରି ଆସିବ; କିନ୍ତୁ ନିନ୍ଦିତ କବିଟିର ବର୍ତ୍ତୁ ଆଉ ଭବିଷ୍ୟତ ନାହିଁ । ସେ ଜୀବନଯାକ ସବୁଥିରୁ ବଞ୍ଚିତ ହୋଇ ଅପଯଶର ନିଆଁରେ ପୋଡ଼ିହୋଇ ମରେ ଓ ତା'ମଲା ପରେ ତା'ର ମଲା କାବ୍ୟଟି ପୁନର୍ଜୀବନ ଲାଭକରି ବଞ୍ଚେ—ମାତ୍ର ସେ ଆଉ ମଶାଣିରୁ ତା'ର କ୍ଷତିପୂରଣ ଦାବୀ କରିବାକୁ ଉଠେନାହିଁ ।

ସେଥିପାଇଁ ସମାଲୋଚକ କୌଣସି କାବ୍ୟ ବା କବିକୁ ନିନ୍ଦା କଲାବେଳେ ଖୁବ୍ ସାବଧାନ ରହିବା ଉଚିତ । ନଚେତ୍ ତାକୁ କାବ୍ୟ-ନିନ୍ଦୁକତା ଓ କବି-ଘାତକତାର ପାପ ମୁଣ୍ଡାଇବାକୁ ପଡ଼ିବ ।

**ଅବହେଳା ଆହୁରି ମାରମ୍ଭକ :**

କିନ୍ତୁ ପ୍ରକୃତରେ "ସ୍ତୁତିଂ ନ ବାଧତେ ରାଜନ୍ ଅତି ବାଧତି ବାଧତେ ।" ଯେ କୌଣସି ସତ୍‌କବି ନିନ୍ଦା ବା ପ୍ରଶଂସାରେ ଯେତେ ବିଚଳିତ ନ ହୁଏ—"ଅବହେଳା" ତା' ପକ୍ଷରେ ଆହୁରି ପୀଡ଼ାଦାୟକ ହୋଇଥାଏ । ସୁକବି ପ୍ରଶଂସାକୁ ଉପଭୋଗ କରିପାରେ—ତା' ପ୍ରତି ନିର୍ଲିପ୍ତ ବି ହୋଇ ଯାଇପାରେ; ନିନ୍ଦାକୁ ସହ୍ୟ କରିପାରେ—ସମ୍ମୁଖୀନ ବି ହୋଇପାରେ, ମାତ୍ର ସମାଲୋଚକର ଅବହେଳା ତା' ପକ୍ଷରେ ଅତି ମାରାତ୍ମକ—ଓ ଅତି ଦୁଃସହ । ସମାଲୋଚକର ଅବହେଳା ଯୋଗୁଁ ବହୁ ସୁନ୍ଦର ଗଳ୍ପ, ଉପନ୍ୟାସ, ନାଟକ ଓ ପ୍ରବନ୍ଧାଦି ବହୁକାଳଯାଏ ପାଠକର ଦୃଷ୍ଟି-ଗୋଚର ମଧ୍ୟ ହୋଇପାରେ ନାହିଁ—ପ୍ରକାଶକଙ୍କ ନଜର ଭିତରକୁ ଆସିପାରେ ନାହିଁ—ଏବଂ ଅନ୍ୟାନ୍ୟ ବିଚାରକମାନଙ୍କୁ ସେ ଗ୍ରନ୍ଥ ସମ୍ବନ୍ଧେ ଅନ୍ଧାରରେ ରଖି ଦିଆଯାଏ । "ଅବହେଳା" ଠାରୁ ନିର୍ମମ, ଅପମାନଜନକ, ନୈରାଶ୍ୟକାରକ, ଉତ୍ସାହନାଶକ ଓ ପୀଡ଼ାଦାୟକ ଦଣ୍ଡ ଲେଖକ ପକ୍ଷରେ ଆଉ ନାହିଁ ।

ତେଣୁ ଇଂରାଜୀରେ ଲେଖନ୍ତୁ ବା ଓଡ଼ିଆରେ ଲେଖନ୍ତୁ—ସମାଲୋଚକ ମାତ୍ରେଇ ଏ ସମ୍ବନ୍ଧେ ସମ୍ବେଦନଶୀଳ ରହିବେ, ଏହା ଆଶା କରିବା ଉଚିତ ।



# ଆଧୁନିକ କବିତାରେ ଗତାନୁଗତିକତା

**ସାଧାରଣ ଅଭିଯୋଗ :**

ଆଧୁନିକ କବିତାର ସଂଜ୍ଞା ସମ୍ବନ୍ଧେ ବହୁ ବାଦାନୁବାଦ ହେଉଛି । ଆଧୁନିକ କବିତା ଦୁର୍ବୋଧ—କି ଅବୋଧ—କି ସୁବୋଧ ସେ ସମ୍ବନ୍ଧେ ବହୁ ଉତ୍ୟକ୍ତ କାଣ୍ଡ ଘଟୁଛି । ପୁଣି ଚଳିତ ସମୟରେ ଲେଖୁଥିବା କବିମାନଙ୍କ ଭିତରୁ କିଏ ଯଥାର୍ଥରେ ଆଧୁନିକ—ବା କିଏ କେତେ ଭାଗ ଆଧୁନିକ ସେ ସମ୍ବନ୍ଧେ ପ୍ରତ୍ୟେକ କବିର ପ୍ରଚଣ୍ଡ ଉତ୍କ୍ଷିପ୍ତ ଆଧୁନିକମ୍ମନ୍ୟତା ବହୁ ସ୍ଥାନରେ ଓ ସମୟରେ ଭୀଷଣ ଉଦ୍‌ବେଗର ବିଷୟ ହୋଇ ପଡ଼ୁଛି ।

ଏଣେ କିନ୍ତୁ ପାଠକମାନଙ୍କର ଅଭିଯୋଗ ଯେ ଏଇ ସବୁ ଦୁର୍ବୋଧ ଆଧୁନିକ କବିତା (କେତେକ ତ ସବୁ ଆଧୁନିକ କବିତାକୁ ନିର୍ବିଶେଷରେ କହନ୍ତି (''ନନ୍‌ସେନ୍‌ସ'') ଯେ କୌଣସି ନଖୀ, ଶୃଙ୍ଗୀ ଓ ଦନ୍ତୀମାନଙ୍କ ଭଳି ହିଂସ୍ର ଜନ୍ତୁଙ୍କ-ଠାରୁ ଓ ସଂକ୍ରାମକ ରୋଗମାନଙ୍କଠାରୁ ଆହୁରି ମାରାତ୍ମକ, ତେଣୁ ଦୂରତଃ ବର୍ଜନୀୟ ।

**ଯଥାର୍ଥ ଅଭିଯୋଗ :**

କିନ୍ତୁ ବହୁ ଶିଷ୍ଟ ପାଠକ ବେଶ୍ ଭଦ୍ରଭାବେ ଅନୁଯୋଗ କରନ୍ତି—ଆମେ ଆଧୁନିକ କବିତା ପଢ଼ିବାପାଇଁ ବ୍ୟାକୁଳ । ପଢ଼ିଛୁ ମଧ୍ୟ—କିନ୍ତୁ ନିତାନ୍ତ ପରିତାପର କଥା, ସେଗୁଡ଼ିକ ଆମକୁ ସ୍ପର୍ଶ କରୁନାହିଁ ଏବଂ ସର୍ବସାଧାରଣଙ୍କ ପ୍ରତି ଏହାର କିଞ୍ଚିତ୍ ହେଲେ ଆବେଦନ ରହୁନାହିଁ । ତେବେ କାହାପାଇଁ କବିତାର ଏ ସଘନ ସୃଷ୍ଟି ?

ଯେଉଁମାନେ ଆଧୁନିକ କବିତାର ଦୁର୍ବୋଧତା ଉପରେ ବିରକ୍ତ, ରୁଷ୍ଟ ଓ ଉତ୍କ୍ଷିପ୍ତ, ସେମାନଙ୍କ ଭିତରୁ ଶତକଡ଼ା ବହୁଭାଗ ପାଠକ କବିତାଗୁଡ଼ିକ ସରଳ ଓ ସୁବୋଧ ହେଲେ ଯେ ସତକୁ ସତ ଅନୁରାଗୀ ହୋଇ ପ୍ରତିଦିନ କବିତା ପଢ଼ିବେ—ବା ପଢ଼ିଲେ ବି କବିତାର ମର୍ମ ବୁଝିବେ—ଏମନ୍ତ ହୋଇ ତ କଥା ନାହିଁ । କାରଣ କବିତା ପ୍ରତି ଯଥାର୍ଥ ଅନୁରାଗ ଓ କବିତା ମାଧ୍ୟମରେ ଅନୁଭୂତିର ଗାମ୍ଭୀରତା ବଢ଼ାଇବାଲାଗି ସ୍ପୃହା ଖୁବ ସୁଲଭ ନୁହେ—ହୋଇ ପାରେନା । ସେଥିପାଇଁ ଆଧୁନିକ କାଳରେ ଆଧୁନିକ କବିତାର ପାଠକ ସବୁ ଦେଶରେ ଅତି ମୁଷ୍ଟିମେୟ ।

## ଆଧୁନିକତା ଦାୟୀ ନୁହେଁ :

କିନ୍ତୁ କବିତାର ଆଧୁନିକତା କେବଳ ଏଥିଲାଗି ଦାୟୀ ନୁହେଁ । ତାର ମୁଖ୍ୟ ହେତୁ ହେଲ—ଅନୁଭୂତି ବା ଉପଲବ୍‌ଧିର ସୂକ୍ଷ୍ମତମ ଓ ଗାମ୍ଭୀରତମ ସତ୍ୟଟିହିଁ କେବଳ ଛନ୍ଦ-ସହିତ ଆବେଗମୟୀ ଭାଷାରେ ପ୍ରକାଶ ହେଲେ ଯାଇ କବିତା-ବାଚ୍ୟ ହୋଇଥାଏ; କିନ୍ତୁ ଚିନ୍ତନଜନିତ ଯୁକ୍ତିଯୁକ୍ତ ସରଳ ସତ୍ୟଟି ପରିଚ୍ଛନ୍ନ ତର୍କସମ୍ମତ ଭାଷାରେ ବ୍ୟକ୍ତ ହେଲେ ତାହା ଗଦ୍ୟ ରଚନାର ରୂପ ନିଏ ଓ ସେଥିଯୋଗୁଁ ତାହା ସାଧାରଣ ବୁଦ୍ଧିଗୋଚର ହୋଇପାରେ । ପୁଣି କବିତା ଅପେକ୍ଷା ଓ ସାଧାରଣ ଗଦ୍ୟ-ଲିଖିତ ରଚନା ଅପେକ୍ଷା ଗଳ୍ପ ଉପନ୍ୟାସର ପାଠକସଂଖ୍ୟା ସର୍ବାଧିକ । କାରଣ ଗଳ୍ପଉପନ୍ୟାସରେ ନାନା ଚରିତ୍ର, ଘଟଣା ଓ ବର୍ଣ୍ଣନାଦିର ବାହୁଲ୍ୟକ୍ରମରେ ସତ୍ୟକୁ ପ୍ରକାଶ କରିବାର ଏକ ଲୀଳାମୟ ଗତିକର୍ମ ରହିଛି । ଯେତେ ଗୂଢ଼ ବା ଗମ୍ଭୀର ସତ୍ୟସମ୍ବଳ ଗଳ୍ପ ବା ଉପନ୍ୟାସ ହେଉ ପଛେ—ତହିଁର ଆଖ୍ୟାନଭାଗଟି ହିଁ ତନ୍ମଧ୍ୟରେ "ଗ୍ରୀବା ପ୍ରବେଶ" ଲାଗି ସର୍ବସାଧାରଣଙ୍କୁ ସୁଯୋଗ ଦେଇଥାଏ । ସେଥିଲାଗି ରାମାୟଣ ମହାଭାରତ ବା ଭାଗବତର ଅନ୍ତର୍ନିହିତ ଅତିଗଭୀର ଓ ପବିତ୍ର ଅନୁଭୂତି, ଅଥଚ ମାନସିକତା ଅତି ନିଗୂଢ଼ ଭୂମିସ୍ଥ ଉପଲବ୍‌ଧିର ଲବ୍‌ଧାଂଶ ପାଇବାକୁ ସମର୍ଥ ନ ହେଲେ ବି ଆବାଳ-ବୃଦ୍ଧବନିତା ତହିଁର ଆଖ୍ୟାନ ଭାଗଟିକୁ ଯଥାସମ୍ଭବ ଉପଭୋଗ କରିଥାନ୍ତି । ସେକ୍‌ସପିୟର, କାଳିଦାସ ଓ ଟଲ୍‌ଷ୍ଟୟ ଆଦିଙ୍କର ନାଟକ, ଗଳ୍ପ, ଉପନ୍ୟାସଗୁଡ଼ିକର ଜନପ୍ରିୟତା ପାଇଁ ସେଗୁଡ଼ିକର ଆଖ୍ୟାନଭାଗର ଚମତ୍କାରିତା ହିଁ ମୁଖ୍ୟତଃ ଦାୟୀ

## ମହାକାବ୍ୟ ଓ ପୁରାଣର ଲୋକପ୍ରିୟତା (?) :

ଆମର ମହାକାବ୍ୟ ବା ପୁରାଣମାନଙ୍କରେ ବର୍ଣ୍ଣିତ ଆଖ୍ୟାନଗୁଡ଼ିକର ଆବେଦନ ଯେମିତି ବହୁ ବିସ୍ତାରିତ—ସେହିପରି ଆତ୍ମା ପରମାତ୍ମା, ମାୟା, ପ୍ରକୃତି ଓ ଦେବ-ଦେବୀଙ୍କ ସମ୍ବନ୍ଧେ ଯାହା କିଛି ତାତ୍ତ୍ୱିକ ବ୍ୟାଖ୍ୟାନ—ସେଗୁଡ଼ିକ ମଧ୍ୟ ଭଣା-

ଅଧିକେ ବୁଦ୍ଧିମାନ୍ ବ୍ୟକ୍ତିମାନଙ୍କର ଚିତ୍ତରେ ଆପାତତଃ ସ୍ପଷ୍ଟ ହୋଇ ଯାଇଥାଏ । ମାତ୍ର ଉଦ୍ଧବଙ୍କ ତୁଣ୍ଡରେ—"ସକଳ ତୀର୍ଥ ତୋ ଚରଣେ,ବଦ୍ରିକା ଯିବି କି କାରଣେ" —କିମ୍ବା ପିଙ୍ଗଳାର ସ୍ୱଗତୋକ୍ତି "ସେ ଗୁରୁ ବାକ୍ୟ ପଶିମାଣି—ଏ ଘରେ ମୁହିଁ ଦୋଷଚାରିଣୀ !! ମୋ ପ୍ରାଣନାଥ ଅଛି · ପାଶେ—ମୁହିଁ ନ ଦେଖେ ମୋହବଶେ"— କିମ୍ବା ଗୋପୀମାନଙ୍କର କୃଷ୍ଣୈକତ୍ୱ-ପ୍ରାପ୍ତିରେ ଦିବ୍ୟ ଉନ୍ମତ୍ତ ବାଣୀ—"କେ ବୋଲେ ମୁହିଁ ନାରାୟଣ,ସେବ ଲେ ମୋହର ଚରଣ"ଆଦି ପଦମାନଙ୍କର ଗଭୀରତତ୍ତ୍ୱ ନିର୍ଭର ରସୋପଲବ୍ଧି କେତେଜଣଙ୍କର ବା ହୋଇଥାଏ ? ବୈଦେହୀଶବିଳାସରେ ବ୍ୟକ୍ତ ଓ ଅବ୍ୟକ୍ତର ଅତୀତ ପୁରୁଷୋତ୍ତମଙ୍କ୍ ହଠାତ୍ ଅଭିବ୍ୟକ୍ତ ପୁରୁଷୋତ୍ତମ ରାମଚନ୍ଦ୍ରଙ୍କ ରୂପରେ ଆଖି ଆଗରେ ଆବିର୍ଭୂତ ଦେଖି ଅରଣ୍ୟବାସୀ ତପସ୍ୱୀଶ୍ୱ ପରମଜ୍ଞାନୀ ମୁନିମାନଙ୍କର ଯେ "ବିଭ୍ରମ ଉପୁଜି ଗଲା ମାନସ—ବୋଇଲେ ସଖୀଙ୍କୁ ସଖୀ ଗୋଆସ" ଆଦି ପଦମାନଙ୍କରେ ନିହିତ ମହତ୍ତମ ଓ ଗଭୀରତମ ଆତ୍ମୋପଲବ୍ଧି ତହିଁରେ ଅଭିଭୂତ ବା ଦ୍ରବିଭୂତ ହେବାର ଜୀବନ-ସାଧନ-ଲବ୍ଧ ସୁଯୋଗ୍ୟ ଚେତନା କେତେ ଜଣଙ୍କର ଅଛି ?

ଏପରିକି ମହାକାବ୍ୟମାନଙ୍କର ଆଖ୍ୟାନ ଭାଗରେ ବି ଭୀଷ୍ମଙ୍କର ଶରଶଯ୍ୟା, ଭୀମଙ୍କର ଦୁଃଶା-ରକ୍ତପାନ, ଦ୍ରୌପଦୀଙ୍କର ପଞ୍ଚସ୍ୱାମୀ ଗ୍ରହଣରେ ସତୀତ୍ୱରକ୍ଷା—ବେଣୀସଂହାର—ଭୀଷ୍ମାର୍ଜୁନ ଯୁଦ୍ଧରେ ଶ୍ରୀକୃଷ୍ଣଙ୍କର ନାଟକୀୟଭାବେ ଅସ୍ତ୍ରଧାରଣ—ଦୁର୍ଯ୍ୟୋଧନର ରକ୍ତନଦୀ ସନ୍ତରଣ, ଏକଲବ୍ୟର ଗୁରୁଦକ୍ଷିଣା, ଶ୍ରୀକୃଷ୍ଣଙ୍କର କାଳୀୟ ଦଳନ-ଗିରିଗୋବର୍ଦ୍ଧନ ଧାରଣ, ରାମ-ପଦସ୍ପର୍ଶରେ ଅହଲ୍ୟା ଉଦ୍ଧାର—ଜଟାୟୁର ସଂଗ୍ରାମ—ସୀତାଙ୍କର ପାତାଳପ୍ରବେଶ ପ୍ରଭୃତି ସହସ୍ର ସହସ୍ର ଘଟଣା ଓ ଚରିତ୍ର-ମାନଙ୍କର ଅନ୍ତ-ନିହିତ ତାତ୍ତ୍ୱିକ ବ୍ୟଞ୍ଜନା-ବୋଧ ଓ ତଜ୍ଜନିତ ଆହ୍ଲାଦନ ବା ଆସ୍ୱାଦନରେ ଚିତ୍ତ-ପ୍ରସାର-କ୍ଷମତା କେତେଜଣ ଅର୍ଜନ କରିଛନ୍ତି ? କେବଳ ଘଟଣାଗୁଡ଼ିକର ବାହ୍ୟଗତି ବା ଚରିତ୍ରମାନଙ୍କର ଆପାତ ରୂପରଙ୍ଗ ପାଠକର ସ୍ନାୟୁ ଓ ତନ୍ନିର୍ଭର ସ୍ଥୂଳମନରେ କିଞ୍ଚିତ୍ ଆଲୋଡ଼ନ ସୃଷ୍ଟି କରିଥାଏ । ଗଦ୍ୟରେ ଲିଖିତ ହେଉ ବା ପଦ୍ୟରେ ଲିଖିତ ହେଉ କଥା ସାହିତ୍ୟ ପକ୍ଷରେ ବହୁ ପାଠକ ପାଇବା—ଏଇ ଦୃଷ୍ଟିରୁ ସୁବିଧାଜନକ; କିନ୍ତୁ କବିତା ପାଇଁ ବହୁ ପାଠକ ପାଇବାର ବାଟ କ'ଣ ?

**"ଗୀତି"ହିଁ ଏକମାତ୍ର :**

କବିତା ତା'ହେଲେ କ'ଣ ସତରେ ମୁଷ୍ଟିମେୟଙ୍କ ପାଇଁ ? ତା'ର ସର୍ବ-ସାଧାରଣଙ୍କ ପ୍ରତି କୌଣସି ଆବେଦନ ନାହିଁ ? ହୋଇପାରେ ନା ? ତା'ହେଲେ ଯେଉଁମାନଙ୍କର କବିତା, ବିଲେ ଗାଏ ଚଷା—ଅନ୍ତଃପୁରେ ଯୋଷା—ନୃତ୍ୟଗୀତେ ବାରାଙ୍ଗନା ? ପୁଣି ସଭାରେ ପଣ୍ଡିତ—ପଥେ ପାନ୍ଥ ହୃଷ୍ଟମନା ??

ଏଠି ମଧ୍ୟ ସେଇ ଏକା କଥା । "ଦେଖି ନବକାଳିକା" ବା "ଶ୍ୟାମ ଅପବାଦ ମୋତେ ଲଗିଥାଉ"ର ଏକ ବାହ୍ୟ ବିଭବ ଏହି ସାଧାରଣ ଆବେଦନପାଇଁ ଦାୟୀ । ତାହା ହେଉଛି ସଙ୍ଗୀତ ରାଗରାଗିଣୀର ସହଯୋଗ । ସର୍ବସାଧାରଣର ଆବେଦ୍ୟ ହେବା ଲାଗି ଆଖ୍ୟାନ ଓ ଚରିତ୍ରର "ଗତି" ଯେମିତି ଗଳ୍ପର ବହିରଙ୍ଗ ବିଭବରୂପେ ସାହାଯ୍ୟ କରେ—କବିତାର ବହିରଙ୍ଗ ବିଭବ ହେଉଛି ସେମିତି ଛନ୍ଦ ଓ ରାଗରାଗିଣୀ ବା ସୁର୍‌ର "ଗତି" । ସ୍ଥୂଳ ମନ ପ୍ରଥମେ ଏହି ବାହ୍ୟ-ଗତି-ଶକ୍ତି ଉପରେ ନିର୍ଭର ନ କଲେ କ୍ରମଶଃ ଭିତରକୁ ପ୍ରବେଶ କରିବାରେ ସମର୍ଥ ହୋଇ ପାରେ ନାହିଁ । ମାତ୍ର ଏଣେ ପୁଣି ଭାବ ବା ଚିନ୍ତାର ଯେ ଗତି ଅନ୍ତରାଳବର୍ତ୍ତୀ, ଅତି ସୂକ୍ଷ୍ମ, ଅଦୃଶ୍ୟ, ନିଷ୍ପନ୍ଦ, ଗମ୍ଭୀର ଧ୍ୱନିଯୁକ୍ତ ତାହା କେବଳ ସୂକ୍ଷ୍ମ ଚେତନାରେ ହିଁ ପ୍ରତିଭାତ ହୋଇଥାଏ । ସେଥିଲାଗି ବହୁ ପାଠକ ପାଇବାପାଇଁ ଗଳ୍ପିକକୁ ଯେମିତି "କଥା"ର ଛଇଳ ଚପଳ ଓ ସୁଷମଗତି ଉପରେ ନିର୍ଭର କରିବାକୁ ପଡ଼ିବ— କବିପକ୍ଷେ ବି ସେମିତି ସଶବ୍ଦ ଚଞ୍ଚଳ "ଗତି"ର ସାହାଯ୍ୟ ବିନା ନାଽନ୍ୟପନ୍ଥା । କେବଳ ମଧ୍ୟଯୁଗୀୟ କବିଗଣ କାହିଁକି—ରାମାୟଣ, ମହାଭାରତ ଓ ଭାଗବତ ପରି ମହାକାବ୍ୟଗୁଡ଼ିକ ମଧ୍ୟ ଏହି ବାହ୍ୟ "ଗତି" ଅର୍ଥାତ୍ "କଥା" ବିଭବ ଓ "ସୁର୍" ବିଭବ ଯୋଗୁ ଆବାଳବୃଦ୍ଧବନିତା ଓ ଆପାମର-ସଜ୍ଜନଙ୍କ ଚିତ୍ତରେ ସମ୍ବେଦ୍ୟ ଓ ନୈବେଦ୍ୟ ହୋଇ ପାରିଛନ୍ତି ।

## କଥାର ମର୍ମ ଓ ସୁର୍‌ର ମର୍ମ :

ଅବଶ୍ୟ ଗଳ୍ପ ଉପନ୍ୟାସର ଏହି "କଥା" ଓ କବିତାର ଏହି "ସୁର୍" କେବଳ ସେମାନଙ୍କର ବହିରଙ୍ଗ ବିଭବ ବୋଲି ଅପ୍ରଧାନ ଦୋଷରେ ଉପେକ୍ଷିତ ହୋଇ ନ ପାରନ୍ତି । କଥା ଓ ସୁର୍ ଗଳ୍ପ ଓ କବିତାର ବାହନ । ଏ ବାହନ ହୁଏତ ଗତକାଲି ବଳୀବର୍ଦ୍ଦ ବାହିତ ମାତ୍ର ଥିଲା ଏବଂ ଆଜି ତାହା ବାଷ୍ପ ବା ବିଦ୍ୟୁତ୍‌ଚାଳିତ ହୋଇଅଛି; କିନ୍ତୁ ଗତିଶୀଳତା ହିଁ ବାହନମାତ୍ରର ଧର୍ମ । ପୁଣି ଲକ୍ଷ୍ୟ କରିବା କଥା — ଯେ ଗଳ୍ପର ଆଖ୍ୟାନଭାଗରେ ହିଁ କେବଳ "କଥା" ନ ଥାଏ—ଘଟଣା ଓ ଚରିତ୍ରମାନଙ୍କର ମର୍ମପ୍ରଦେଶରେ ହିଁ ଥାଏ ଆଉରି ଗୋଟିଏ "କଥା"—ଅତି ସଂଗୋପନରେ ଗୁପ୍ତକଥା—ମର୍ମକଥା— ଏବଂ ଖୁବ୍ ନିଷ୍ପନ୍ଦ ଖୁବ୍ ନୀରବ ଓ ଖୁବ୍ ସଂହତ ଯାହାର "ଗତି" । ଏଠାରେ ଏ "ଗତି" ଅବଶ୍ୟ ପାଠକର ସ୍ନାୟୁମାନଙ୍କରେ ଧରାପଡ଼େ ନାହିଁ । ଏହା ବୁଝା ପଡ଼େ—ତା'ର ଚେତନାର ଗଭୀର "ବୋଧ" ସ୍ତରରେ । ସେମିତି କବିତାର ଯେଉଁ ବାହ୍ୟ ସୁର୍ କେବଳ ଶ୍ରୁତି ନିର୍ଭରତାର ତଳେ ତଳେ – ବହୁ ତଳେ—ଶବ୍ଦମାନଙ୍କର ଅନ୍ତ୍ୟସ୍ତ ପର୍ଯ୍ୟାୟର ରୂପ ପ୍ରକାରର ଭିତରେ ଖୁବ୍ ନିଃଶବ୍ଦରେ ବହି ଚାଲିଥାଏ ଅର୍ଥ ଓ ରସର ଏକ ଅଦୃଶ୍ୟ ଅନ୍ତଃସଲିଳା

ଫଲ୍‌ଗୁଁ । ଯାହାକୁ କୁହାଯାଏ—ଅନ୍ତର୍ଧ୍ୱନି—ବ୍ୟଂଜନା । ରସ-ସମୁଦ୍ରର ଉପରଭାଗ ଲହରୀମାଳା ଯେତେବେଳେ ଚଢ଼ିକୁ ବେଳାଭୂମିରେ ନିକ୍ଷେପ କରନ୍ତି—ସେତେ-ବେଳେ—ସାଙ୍ଗେ ସାଙ୍ଗେ ଏହି ଅଣ୍ତର କରେଣ୍ଟ ତାକୁ ତା'ର ଅଲକ୍ଷ୍ୟରେ ପୁଣି କୂଳରୁ ଟାଣି ନିଏ ରସ-ସମୁଦ୍ରର ଅତଳ ଗଭୀରତା ଭିତରକୁ ।

ମୋଟକଥା—ଶବ୍ଦମାନଙ୍କର ଅର୍ଥଗୁଣ ଓ ଧ୍ୱନିବୈଶିଷ୍ଟ୍ୟ ଦୁଇଟି ହିଁ ଅପରାପର ଶବ୍ଦର ସଂଯୋଗସୂତ୍ରରେ ଅନୁଧାବମାନ । ଗଳ୍ପ ହେଉ ବା କବିତା ହେଉ—ରୂପସତ୍ତ୍ୱ, ସୁର୍‌ସତ୍ତ୍ୱ ଓ ରସସତ୍ତ୍ୱ—ଏହି ତିନୋଟିର "ଗତି" ବିଧାନ ନ କରିପାରିଲେ ତାହା ଆବେଦନ୍‌ରେ ବ୍ୟର୍ଥ ହୋଇଯିବ ହିଁ ଯିବ ।

## ବର୍ତ୍ତମାନର ଅସୁବିଧା :

ଠିକ୍ ଏଇ ସ୍ଥାନରେ । କେତେକ ଉଗ୍ର ଆଧୁନିକ ଗଳ୍ପରେ କଥାଭାଗ ବା ଆଖ୍ୟାନଭାଗର ଅଭାବ ଏତେ ଶୋଚନୀୟ ଯେ—ତଜ୍ଜନିତ ଗତିହୀନତା ଫଳରେ ହିଁ ସାଧାରଣ ତ ଦୂରର କଥା—ଅସାଧାରଣ ପାଠକମାନଙ୍କର ବି ସେ ଗଳ୍ପର ମର୍ମ ଗ୍ରହଣ କରିବାବେଳେ ମର୍ମ ବିଦୀର୍ଣ୍ଣ ହୋଇଯାଏ । ଏଭଳି ଗଳ୍ପରେ ସାଧାରଣତଃ ଗାଳ୍ପିକର ଉଦ୍‌ଭଟ ଖିଆଲ—କ୍ଷଣିକ ପ୍ରବେଗଜନିତ କ୍ଷିପ୍ର ଅନୁଭୂତି—ବା ସମ୍ୟକ୍ ମନନହୀନ ଗୋଟିଏ ଜଟିଳ ଚିନ୍ତା କେବଳ ଗୋଟିଏ ସ୍ଥାନରେ ଗୋଟିଏ ବିନ୍ଦୁକୁ ଆଶ୍ରୟ କରି ଫେନାୟିତ ବା ବିସ୍ତାରିତ ହେଉଥାଏ—ମାତ୍ର ଗତିଶୀଳ ହେଉ ନ ଥାଏ । ଗତିଶୀଳତା ହିଁ ଆଣେ ସ୍ପଷ୍ଟତା, ସ୍ୱଚ୍ଛତା ଓ ପରିଚ୍ଛନ୍ନତା । ଅଧିକାଂଶ ଖିଆଲି ଚିନ୍ତା-ଶ୍ରମକାତର ଗାଳ୍ପିକ ସ୍ୱୀୟ ଗଳ୍ପରେ ଆଖ୍ୟାନଭାବରେ ଏହି ଗତିଶୀଳତା ନ ଆଣି ପାରିବାରୁ ଦୁର୍ବୋଧ ହୁଅନ୍ତି—ଓ ଆପଣାର ଏହି ଅପାରଗତା ବା ଅସମର୍ଥନ୍ନତା ଘୋଡ଼ାଇବାକୁ ଉତ୍‌କ୍ଷିପ୍ତ ହୋଇ "ସିମ୍ବଲ୍" "ଆଲିଗୋରି" "ଅବଚେତନ ଉଦ୍‌ଘାଟନ ପ୍ରକ୍ରିୟା" ସର୍ ରିଏଲିଷ୍ଟିକ୍ ଟ୍ରିଟ୍‌ମେଣ୍ଟ୍‌ ଷ୍ଟ୍ରିମ ଅଫ୍ କନସସ୍‌ନେସ୍ ଆଦିର ସ୍ଲୋଗାନ୍ ଦେଇ ଦମ୍ଭୋକ୍ତି କରନ୍ତି—"ଏ ଦେଶରେ ଏ ସବୁ ବୁଝିବା ଲାଗି ପାଠକ ନାହାନ୍ତି—ଇତ୍ୟାଦି—ଇତ୍ୟାଦି ।" କିନ୍ତୁ ଗଳ୍ପଟିର ଆବେଦନରେ ଏହି ଦମ୍ଭୋକ୍ତି ଆଦୌ ସାହାଯ୍ୟ କରି ପାରେ ନାହିଁ ।

## କବିତାର 'ଅଗତି'ବେଣୀ :

ଗତ କୋଡ଼ିଏ ବର୍ଷରେ ଓଡ଼ିଆ କବିତାକୁ ଯେଉଁମାନେ ନିଷ୍ଠାପର ଭାବେ ସମ୍ବେଦନଶୀଳତାର ନେଇ ଅନୁଶୀଳନ କରି ଆସୁଛନ୍ତି ସେମାନେ ଗୋଟିଏ କଥାରେ ଏକମତ ହେବେ ଯେ ଆଧୁନିକ ଓଡ଼ିଆ କବିତା ତା'ର ସୁର୍‌ରେ ବଡ଼

ଏକଘେଆସ୍ମା ହୋଇ ପଡ଼ିଲାଣି । ଆଙ୍ଗିକରେ ବଡ଼ ଗତାନୁଗତିକତା ଆସିଗଲାଣି ଏବଂ ଏହା ବଡ଼ ପୀଡ଼ାଦାୟକ । ଚଉଦ ଅକ୍ଷରିଆ ପୟାରଖଣ୍ଡ ବା ଦାଣ୍ଡିବୃତ୍ତରେ ବହୁପୂର୍ବେ ଅଷ୍ଟାଦଶାଧିକ ପୁରାଣ ଓ ମହାକାବ୍ୟମାନ ଲେଖା ଯାଇଛି । ସେଗୁଡ଼ିକର ଏହି ଛନ୍ଦୋଗତ ଗତାନୁଗତିକତାକୁ ଭାଙ୍ଗି ଭଞ୍ଜଯୁଗର କବିମାନେ ବିଭିନ୍ନ ରାଗ-ରାଗିଣୀରେ କାବ୍ୟକବିତାମାନ ଲେଖି ପ୍ରକାଶ-ମାଧ୍ୟମ ଆଙ୍ଗିକରେ ଏକ ମସ୍ତ ବିପ୍ଳବ ସୃଷ୍ଟି କରିଥିଲେ ।

**ଏକ ବାହନ-ବହୁ ସବାର୍ :**

ମାତ୍ର ବର୍ତ୍ତମାନ ସ୍ପଷ୍ଟ ଦେଖାଯାଉଛି ଯେ ଆଧୁନିକ ସମସ୍ତ କବିତା ସତେକି ଗୋଟିଏ ସୁର୍ ବା ଆଙ୍ଗିକର ବାହନରେ ବସିଛନ୍ତି !! ବିଭିନ୍ନ ଗୁଣମୂର୍ତ୍ତି ଦେବତା-ଙ୍କର ବିଭିନ୍ନ ପ୍ରକାର ବାହନ ଭଳି ବିଭିନ୍ନ ଭାବମାନଙ୍କର ବାହନ ହେଉଛନ୍ତି – ବିଭିନ୍ନ ଛନ୍ଦ—ରାଗ—ସୁର୍ ଓ ଆଙ୍ଗିକମାନ । କି'ଣ ଆଜିକୁ କୋଡ଼ିଏ ବର୍ଷଧରି ଓଡ଼ିଶାର ସମସ୍ତ କବି ଗୋଟିଏ ଭାବକୁ ଧରି ଗୋଟିଏ ବାହନରେ ଠେଲାପେଲା ହୋଇ ବସୁଛନ୍ତି ଓ ବସି ଆସୁଛନ୍ତି ? ଯାହା ଦେଖା ପଡ଼ୁଛି—ଓଡ଼ିଆ କବିଟିଏ ଭୂମିଷ୍ଠ ହେଲାକ୍ଷଣି— ତା'ର ବାହନ ଖୋଜିବାକୁ ଆଉ ପ୍ରୟାସ ନ କରି—ହୁ-ଦମ୍ଭ ଯାଇ ଧରାପରା ଲଗାଇ ସେଇ ଏକ ବାହନଟି ଉପରେ କୌଣସିମତେ ସବାର୍ ହୋଇ ପଡ଼ୁଛି ।

ଆଧୁନିକ ପୃଥିବୀ ପୁଣି ଯେତେବେଳେ ନାନାବିଧ ଚିନ୍ତା, ଅନୁଭୂତି ଓ ବିବର୍ତ୍ତ-ରାଜିରେ ବହୁ ବର୍ଣ୍ଣାଢ଼୍ୟ—ବହୁ ବିଚିତ୍ର, ବହୁ ଜଟିଳ ଓ ବହୁ ବିସ୍ତୃତ— ସେପରିସ୍ଥଳେ ଗୋଟିଏ ସୁର୍ ବା ଛନ୍ଦ ଓ ଗୋଟିଏ ପ୍ରକାରର ଆଙ୍ଗିକ କିପରି ଯେ ଏତେ ବିଚିତ୍ର ବିପୁଳ ଭାବଶକ୍ତିର ବାହନ ହୋଇ ପାରିବ – ତାହାହିଁ ଆଶ୍ଚର୍ଯ୍ୟର ବିଷୟ ।

**ଆଙ୍ଗିକରେ ଗତାନୁଗତିକତା :**

ଗତ କୋଡ଼ିଏ ବର୍ଷଧରି ଆଧୁନିକ ଓଡ଼ିଆ କବିତାର ସେଇ ଗୋଟିଏ ଆକାର —ଗୋଟିଏ ଖାତ—ଓ ଗୋଟିଏ ଛାଞ୍ଚ ଏବଂ ଆଧୁନିକ କବିଗଣ ମଧ୍ୟ ବିନାଦ୍ୱିଧାରେ ଏହି ଧରାବନ୍ଧା ପ୍ରକାଶଖାତର ଗତରେ ପଡ଼ି, ସେମାନଙ୍କର ସ୍ୱକୀୟ ଜୀବନୀଶକ୍ତି, ପ୍ରାଣ-ପ୍ରାଚୁର୍ଯ୍ୟ ଓ ଚେତନାର ନବନବଉନ୍ମେଷ ହରାଇ ବସୁଛନ୍ତି । ଗୋଟିଏ ବାହନ ଉପରେ ତା'ର ବହନ କ୍ଷମତାପ୍ରତି ସଚେତନ ନ ହୋଇ ସମସ୍ତେ ସବାର ହୋଇଗଲେ – ସେ ବାହନଟିର ପ୍ରାଣପାତ ହେବ ନାହିଁ କି ? ଏବଂ କହିବାରେ କୁଣ୍ଠା

ନାହିଁ ଯେ ଆଧୁନିକ କବିତାରେ ଏହି "ଛନ୍ଦରୂପ" ବା "ଆଙ୍ଗିକ" କେଉଁଠାକୁ ତା'ର ଗତିଶୀଳତା ହରାଇ ବସିଲାଣି—। ତାହା ଆଉ ବାହନ ନୁହେଁ—ବାହନର ଶବ ମାତ୍ର । ଏହାପରେ କେହି ସମର୍ଥ କବି ଆପଣା ପ୍ରତିଭାର ପ୍ରଚଣ୍ଡ ସଞ୍ଜୀବନୀ ମନ୍ତ୍ର-ଦ୍ୱାରା ଏହି ବାହନଟିକୁ ନୂତନ ଜୀବନୀଶକ୍ତିରେ ଚଳନ୍ତିଶକ୍ତିଯୁକ୍ତ କରନ୍ତୁ—ନଚେତ୍ ନୂତନ ପ୍ରତିଭାଧର କବିଗଣ ସେମାନଙ୍କ ଭାବର ପ୍ରକାଶପାଇଁ ନୂତନ ଛନ୍ଦରୂପ ସୃଷ୍ଟି କରନ୍ତୁ ।—କରନ୍ତୁ ନୂତନ କବିତାଲାଗି ନୂତନ ଆଙ୍ଗିକର ଆବିଷ୍କାର—ନୂତନ ସ୍ୱପ୍ନର ରୂପାୟନ ଲାଗି ଖୋଜନ୍ତୁ ନୂତନ ସୁର୍ ।

## ଏ ଗଡ୍‌ଡ଼ାଳିକା ଭାଙ୍ଗିବ କପରି ? :

ଏ ଗଡ୍‌ଡ଼ାଳିକାରୁ ମୁକ୍ତି ପାଇବାକୁ ହେଲେ ତରୁଣ କବିମାନଙ୍କୁ ଆଗ ଏ ସମ୍ବନ୍ଧେ ଚିନ୍ତା, ଅନୁଭୂତି ସଚେତନ ହେବାକୁ ହେବ । ବିଶ୍ୱର ବହୁବିଧ ଚିନ୍ତା, ଅନୁଭୂତି ଓ ଭାବରାଶିର କେନ୍ଦ୍ର ସଙ୍ଗେ ନିଜର ଚେତନାକୁ ଆନ୍ତରିକଭାବେ ଯୁକ୍ତ କରିବାକୁ ହେବ । ଇତର ସାଂସାରିକ ବ୍ୟକ୍ତିମାନଙ୍କ ଭଳି ଗୋଟିଏ ପ୍ରକାର ସ୍ୱାର୍ଥପର ଗତାନୁଗତିକ ପାର୍ଥିବ ଜୀବନଯାତ୍ରା ନିର୍ବାହ କଲେ—ଏବଂ ସମାଜ ବା ଜୀବନର ବିଭିନ୍ନ ଗତିବୃତ୍ତି ସଙ୍ଗେ ନିଜ ଗତିବୃତ୍ତିକୁ ପ୍ରତ୍ୟକ୍ଷଭାବେ ଯୋଗ ନ କଲେ—ବାହାରର ଓ ଅନ୍ତରର ଭାବରାଶି ପରସ୍ପର ସଙ୍ଗେ ସଂଘର୍ଷିତ ନ ହେଲେ—କବିର ଆପଣା ଭିତରେ ନୂତନଭାବ ବା ଚିନ୍ତା ଉଦ୍ରେକ ହେବ ନାହିଁ—କି ତା'ର ପ୍ରକାଶ-ମାଧ୍ୟମ ବି ନୂତନ ହୋଇ ପାରିବ ନାହିଁ । ପୁଣି ନିଜର ସୀମିତ ରୁଚି, ବୋଧ ଓ ଖିଆଲକୁ କେବଳ ବଡ଼ ବୋଲି ଧରିଲେ—ଆପଣାର ଏକ ଗଡ୍‌ଡ଼ାଳିକାପ୍ରବାହ ସ୍ୱତଃ ସୃଷ୍ଟି ହୋଇଯିବ—ଏବଂ ତା'ର ଭିତରେ ଗତାନୁଗତିକଭାବେ ଆତ୍ମପ୍ରକାଶ ଚାଲିଥିବ । ବହିଃପ୍ରକୃତିର ବହୁଗତି, ବହୁଧ୍ୱନି ଓ ବହୁଛନ୍ଦ ସଙ୍ଗେ କବି-ଆତ୍ମାର ପରିଚୟ ନିତାନ୍ତ ଆବଶ୍ୟକ । କବିପକ୍ଷରେ ପ୍ରକୃତି-ଛଡ଼ା ହେଲେ ଭାବରେ ଓ ଆଙ୍ଗିକରେ ଗତାନୁଗତିକ ହୋଇଯିବାର ଆଶଙ୍କା ପଦେ ପଦେ ରହିଛି । ନୃତ୍ୟ-ସଙ୍ଗୀତ କଳା ଓ ଚିତ୍ରକଳା ପ୍ରତି ସର୍ବଦା ନିଜର ବୁଦ୍ଧିଗତ ଓ ବୋଧଗତ ଆଗ୍ରହକୁ ଉଜ୍ଜୀବିତ ରଖିବାକୁ ପଡ଼ିବ ।

## ପ୍ରତିଭାବାନ୍ କବି ଓ ଗତାନୁଗତିକ ଆଙ୍ଗିକ :

ଏହାଛଡ଼ା ଯେଉଁ ବିଶିଷ୍ଟ ପ୍ରତିଭାବନ୍ତ କବିମାନେ ନିଜେ ଏକ ବିଶେଷ ପ୍ରକାଶ-ମାଧ୍ୟମ ବା ଆଙ୍ଗିକର ଆବିଷ୍କର୍ତ୍ତା—ସେମାନେ ପ୍ରଥମରୁ ସେହି ଆଙ୍ଗିକର ଶକ୍ତି ଓ ଗତିଶୀଳତାର ଚମତ୍କାରିତା ଲାଗି ପାଠକର ଚିତ୍ତମଧ୍ୟକୁ ପ୍ରବେଶ କରିଥାନ୍ତି—ମାତ୍ର

ଯେତେବେଳେ ବର୍ଷ-ବର୍ଷ ଧରି ସେମାନେ ସେହି ଗୋଟିଏ ଆଙ୍ଗିକଭିତରେ ଆତ୍ମ-ପ୍ରକାଶ କରି ଚାଲନ୍ତି ସେତେବେଳେ ସେମାନଙ୍କ ପକ୍ଷରେ କେବଳ ଏହି ଆଙ୍ଗିକର ଗତାନୁଗତିକତା ଲାଗି ପାଠକର ବିରକ୍ତିଭାଜନ ହୋଇ ପଡନ୍ତି । ସେମାନଙ୍କ ପକ୍ଷରେ ଉଚିତ ହେଉଛି – ସାହସର ସହିତ ସେହି ଅନୁସୃତ ଆଙ୍ଗିକକୁ ଭାଙ୍ଗି ଦେଇ – ନୂତନ ଆଙ୍ଗିକ ନେଇ ପରୀକ୍ଷା କରିବା; କିନ୍ତୁ ଏଥିରେ ବି ପ୍ରଧାନ ଅସୁବିଧା ହେଉଛି – ବିଷୟବସ୍ତୁର ନୂତନତା ନ ଥାଇ – କେବଳ ଆଙ୍ଗିକର ନୂତନତାରେ ପରୀକ୍ଷା କଲେ – ଆଙ୍ଗିକ ଟି "ଶୈଳୀ"ରେ ପରିଣତ ନ ହୋଇ "ଫେସନ୍"ରେ ପରିଣତ ହୋଇ ପଡ଼େ । ତେଣୁ ତା'ର ପ୍ରଭାବ ହୁଏ ଅତି ଲଘୁ । ଏ କ୍ଷେତ୍ରରେ ପ୍ରତିଭାବାନ କବିର ଉଚିତ ହେଉଚି – ନିଜ ଅନୁସୃତ ଜୀବନଧାରାର ଗତାନୁଗତିକତାକୁ ସାହସର ସହିତ ଭାଙ୍ଗି ଦେବା ଓ ନୂତନ ଜୀବନଧାରାର ସମ୍ମୁଖୀନ ହେବା । କାରଣ ଜୀବନରେ ନୂତନ ଅଭିଜ୍ଞତାମାନ ଲାଭ କରି ନୂତନ ଅନୁଭୂତିର ଉଦ୍‌ଗମନରେ – କବି ନିଜେ ପ୍ରତ୍ୟକ୍ଷଭାବେ ଚେତନାର ନୂତନସ୍ତରଗୁଡ଼ିକୁ ଆବିଷ୍କାର ନ କଲେ ଜୀବନର ନିତ୍ୟନୂତନ ଅର୍ଥ ପାଇବ ନାହିଁ । ପୁଣି ନୂତନ ଅର୍ଥ ନ ପାଇ – କେବଳ ନୂତନ ଆଙ୍ଗିକର ପରୀକ୍ଷା କଲେ – ସେ ଆଙ୍ଗିକ ମଧ୍ୟ ପୂର୍ବବତ୍ ଗତାନୁଗତିକ ନ ହୋଇ ପାରେ—ମାତ୍ର ଶକ୍ତିହୀନ ହୋଇ ପଡ଼ିବ ।

ଶେଷ କଥା—ଆମର ତରୁଣ କବିଗଣ ଯଦି କେବଳହିଁ କବିତାର ଏହି ବାହ୍ୟ ସ୍ୱର ବା ଛନ୍ଦରୂପ ବା ଆଙ୍ଗିକର ପରିବର୍ତ୍ତନ ଲାଗି ସଚେତନ ଓ ପ୍ରୟାସୀ ନ ହୁଅନ୍ତି—ତେବେ ଆଧୁନିକ କବିତା ପଠନ ନିଶ୍ଚିତଭାବେ ସାଧାରଣ ଓ ଅସାଧାରଣ ପାଠକଗୋଷ୍ଠୀକୁ ଆଲର୍ଜିଗ୍ରସ୍ତ କରିବ ।



# ଅଭିବ୍ୟକ୍ତିରେ ବହୁଭାଷଣ

**କ୍ରିୟା ଓ ବିଶେଷଣରେ :**

କୌଣସି ବାକ୍ୟାଳାପରେ, ବାକ୍ୟବିନ୍ୟାସରେ ବା ପଦଯୋଜନାରେ ବାଗ୍ବହୁଳତା ପ୍ରକାଶ ପାଏ ସେତିକବେଳେ, ଯେତେବେଳେ ବକ୍ତା ବା ଲେଖକ ଅସଂଯତଭାବେ କ୍ରିୟା ଓ ବିଶେଷଣ ପଦ ବାହୁଲ୍ୟରେ ତାଙ୍କର ବକ୍ତବ୍ୟ ବା ଲେଖାଟିକୁ ଭାରାକ୍ରାନ୍ତ କରି ପକାନ୍ତି । କେବଳ କ୍ରିୟା ବା ବିଶେଷଣ "ପଦ"ର ବାହୁଲ୍ୟ ନୁହେଁ ଅଯଥା ବିଶେଷଣାତ୍ମକ ଓ କ୍ରିୟାତ୍ମକ ବାକ୍ୟର ସୀମାତିରିକ୍ତ ବ୍ୟବହାର ମଧ୍ୟ ବକ୍ତବ୍ୟକୁ ନିରର୍ଥକ ଲଘୁଉକ୍ତି, ଭାରାକ୍ରାନ୍ତ ଓ ସତ୍ୟ-ସଂପର୍କ-ବିରହିତ କରି ପକାଏ । ଆମର ଅଧିକାଂଶ ଗଳ୍ପ, ଉପନ୍ୟାସ ଓ କବିତାରେ ବିନା ପ୍ରୟୋଜନରେ ଚିନ୍ତାହୀନ ବିଶେଷଣ ଓ କ୍ରିୟା ପଦମାନଙ୍କର ଅତ୍ୟାଗ୍ରହ ଏତେ ଅଧିକ ଯେ ସେଥିରେ କେବଳ କର୍ତ୍ତାପଦମାନଙ୍କର ସଂଭ୍ରମ ନଷ୍ଟ ହୁଏ ନାହିଁ—ପାଠକର ମଧ୍ୟ ଧୈର୍ଯ୍ୟଚ୍ୟୁତି ଘଟାଇ ଥାଏ ।

କଥାକଥାକେ "ମମତାମୟୀ" ଭଉଜ, "ସନ୍ତାନବତ୍ସଳା ମାତା,"— ପଦପଦକେ "କମ୍ର ଶରତର "ନମ୍ର ଗୋଧୂଳି, "ବିଧୁର" ଚନ୍ଦ୍ର, "ମନ୍ଦିର" ଜୋତ୍ସ୍ନା, "ସାରଗର୍ଭିକ" ଭାଷଣ "ସ୍ୱପ୍ନିଳ" ଗୃହିଣୀ ପରି ପ୍ରୟୋଗରେ ବିଶେଷଣପଦଗୁଡ଼ିକ କୌଣସି ନିର୍ଦ୍ଦିଷ୍ଟ ବା ବିଶିଷ୍ଟ ଅର୍ଥ ଜ୍ଞାପନ କରନ୍ତି ନାହିଁ—ପରନ୍ତୁ ଉପସ୍ଥିତ ବିଶେଷ୍ୟ ଗୁଡ଼ିକର ମର୍ଯ୍ୟାଦାହାନି କରିଥାନ୍ତି— ଏବଂ ସେମାନଙ୍କର ଅସ୍ତିତ୍ୱ ଉପରେ ସଂଶୟ ସୃଷ୍ଟି କରିଥାନ୍ତି । ଏଥିରେ କେବଳ ବକ୍ତା ବା ଲେଖକଙ୍କର ଚିନ୍ତା-ଭାବ-ଲେଶ-ହୀନ ବାଗ୍ବହୁଳତା ହିଁ ପ୍ରକଟିତ ହୁଏ । ଏଭଳି ବିଶେଷଣମାନ କେବଳ କାନ ଶୁଣେ—ମାତ୍ର ତାହା କୌଣସି ଭାବ, ଚିନ୍ତା ବା କ୍ରିୟାର ଧ୍ୱନିରୂପ ମନରେ ସୃଷ୍ଟି କରି ପାରେ ନାହିଁ ।

ସେହିପରି ଅନେକ ଲେଖା—ପୃଷ୍ଠା ପୃଷ୍ଠାବ୍ୟାପୀ ଏତେ ଅବାନ୍ତର କ୍ରିୟା-ପଦର ବାହୁଲ୍ୟରେ ଜର୍ଜରିତ ଯେ ସେଠାରେ ଖାଲି କର୍ତ୍ତାପଦମାନଙ୍କର ଅଯଥା ଧାଁ ଧପଡ, ମଗ୍ନମରି, ପିଟାପିଟି, ଧସ୍ତାଧସ୍ତି, ଗୋଳିଆ ମିଶା, ହୋ-ହାଲ୍ଲା ଉତ୍କ୍ଷିପ୍ତ ଛବି ବ୍ୟତୀତ ପାଠକର ଚିତ୍ତରେ କୌଣସିପ୍ରକାର ସ୍ଥିର ସଂଭ୍ରମପୂର୍ଣ୍ଣ ଅର୍ଥରୂପ ଅବଧାରିତ ହୋଇ ପାରେ ନାହିଁ । ପାଠକ ବା ଦର୍ଶକ ସେଠାରେ କେବଳ କ୍ରିୟାଗୁଡ଼ିଏ ଦେଖନ୍ତି—ମାତ୍ର ସେଗୁଡ଼ିକର ଉଦ୍ଦେଶ୍ୟ ବା ଅର୍ଥ ବୁଝି ପାରନ୍ତି ନାହିଁ । କେତେକ ଅନର୍ଥକ ଅସଂଯତ, ବିଶୃଙ୍ଖଳ, ଚିନ୍ତାଶୂନ୍ୟ ଓ ଲକ୍ଷ୍ୟହୀନ କ୍ରିୟା କୌଣସି ଭାବ ବା ଚିତ୍ରର ବ୍ୟଞ୍ଜନା ମଧ୍ୟ ଦେଇ ପାରନ୍ତି ନାହିଁ ।

**ବିଶେଷଣର ବିଶ୍ଳେଷଣ :**

କୌଣସି ବିଶେଷ୍ୟ-ସର୍ବନାମ-ଅବ୍ୟୟ ଓ କ୍ରିୟାପଦର ଏକ ବା ଏକାଧିକ, ପ୍ରସ୍ତୁତ ବା ଅପ୍ରସ୍ତୁତ, ବ୍ୟଞ୍ଜିତ ବା ସୁନିର୍ଦ୍ଦିଷ୍ଟ ଗୁଣ, କର୍ମ, ଭାବ ବା ଅର୍ଥକୁ ବିଶେଷିତ କରେ ବୋଲି ପଦଟିର ନାମ ବିଶେଷଣ । ତା'ହେଲେ ବିଶେଷଣଟି ଭିତରେ ସଂଗୋପନରେ ରହିଛି ବିଶେଷିତ ପଦଟିର ବହୁ ଗୁଣ, କର୍ମ, ଭାବ ଓ ଅର୍ଥର କ୍ରିୟାମାନ । ଅନ୍ୟ ପ୍ରକାରେ କହିଲେ—ବିଶେଷିତ ପଦଗୁଡ଼ିକର ଅନ୍ତର୍ନିହିତ ଓ ବାହ୍ୟିକଶକ୍ତିରେ ଅପ୍ରକଟ ବା ପ୍ରକଟ ହେଉଥିବା ଗୁଣାତ୍ମକ, କ୍ରିୟାତ୍ମକ, ଭାବାତ୍ମକ, ଓ ଅର୍ଥାତ୍ମକ ସତ୍ୟଟି ଖୁବ୍ ସଂକୁଚିତ ଅଥଚ ଶକ୍ତିଶାଳୀରୂପରେ ବିଶେଷଣ ପଦଟି ଭିତରେ ନିହିତ ହୋଇଥାଏ । ସେଥିଲାଗି କବିତା ହିଁ ବିଶେଷଣର ବହୁଳ ବ୍ୟବହାର-ଲାଗି ଉପଯୁକ୍ତ କ୍ଷେତ୍ର । ନାଟକ ଓ ଗଳ୍ପ ଉପନ୍ୟାସ କ୍ରିୟାର ବ୍ୟବହାରଲାଗି ପ୍ରଶସ୍ତ ।

ଉଦାହରଣସ୍ୱରୂପ "ଉଚ୍ଛ୍ୱସିତ"—ଏହି ବିଶେଷଣଟିର କଥା ଦେଖାଯାଉ । ଏହି ବିଶେଷଣଟି ପଛରେ "ଉଚ୍ଛୁଳିବା" କ୍ରିୟାଟିର ଗୋଟିଏ ପ୍ରସାରିତ କର୍ମପରମ୍ପରା ରହିଛି । "ଜନତାର ଉଚ୍ଛ୍ୱସିତପ୍ରଶଂସା"—କୁ ବୁଝିବାକୁ ହେଲେ, ତା' ପଛରେ ବହୁ କ୍ରିୟାର ସହଯୋଗ ଲକ୍ଷ୍ୟ କରିବାକୁ ହେବ । ଯେମିତି—ବକ୍ତାଙ୍କ ଭାଷଣ ଶୁଣି କେତେକ ଆନନ୍ଦରେ "ଡେଇଁଲେ"—ଟେବୁଲ୍ "ବାଡେଇଲେ"—କରତାଳିରେ ଆକାଶ "କମ୍ପାଇଲେ"—କେତେକ ଅତି ଖୁସୀ ହୋଇ ଉଚ୍ଚ ସ୍ୱରରେ ବକ୍ତାଙ୍କର "ଜୟନାଦକଲେ ।" ଏହି ସବୁ କ୍ରିୟାଗୁଡ଼ିକ ପରସ୍ପର ଅନୁଗାମୀ ବା ସହଯୋଗୀ ଏବଂ ଏମାନେ ଏକତ୍ର ମିଶି ପାଠକ ବା ଦର୍ଶକର ଆଖି ଆଗରେ ଏମିତି ଗୋଟିଏ ଚିତ୍ର ତୋଳି ଧରନ୍ତି—ଯାହାଦ୍ୱାରାକି ସେ ଆପଣାର ଚିତ୍ତଫଳକରେ ଉକ୍ତ ସ୍ଥୂଳ ଚିତ୍ରଟିର ଏକ ରମ୍ୟ ଅନୁଭୂତିମୟ ପ୍ରତିବିମ୍ବକୁ ଧାରଣ କରିନେଇ ପାରେ, ମାତ୍ର

କ୍ରିୟାଗୁଡ଼ିକ ଘଟଣାର ନାନା ସାଦୃଶ୍ୟ ଓ ବୈପରୀତ୍ୟ ମଧ୍ୟରେ ବି ସମଗତି ଓ ସମଲକ୍ଷ୍ୟ ନ ହେଲେ ଶରୀରର ସାମଗ୍ରିକ ରୂପ ନଷ୍ଟ ହୋଇଯାଏ ଏବଂ ତାହା ଭାବାର୍ଥହୀନ ହୋଇପଡ଼େ ।

ଏ ଦୃଷ୍ଟିରୁ କ୍ରିୟା ଓ ବିଶେଷଣଗୁଡ଼ିକ ପ୍ରାୟ ସମଧର୍ମୀ, ମାତ୍ର ସେମାନଙ୍କର ପ୍ରଭାବନ-ପ୍ରଣାଳୀରେ ପାର୍ଥକ୍ୟଟିକୁ ବୁଝି ରଖିବା ଉଚିତ । ଯେହେତୁ ଗୋଟିଏ ବିଶେଷଣ ହେଉଛି—ବହୁ ସ୍ଥୂଳ କ୍ରିୟାର ଏକ ସଂକୁଚିତତମ ସୂକ୍ଷ୍ମରୂପ—ଏବଂ କ୍ରିୟାଗୁଡ଼ିକ ହେଉଛନ୍ତି ଏକ ବିଶେଷଣର ବିସ୍ତାରିତ ରୂପ—ସେ ଦୃଷ୍ଟିରୁ ଉଭୟେ ବକ୍ତା ଓ ଶ୍ରୋତା ଏବଂ ଲେଖକ ଓ ପାଠକ କ୍ରିୟା ଓ ବିଶେଷଣମାନଙ୍କ ଉପରେ ଖୁବ୍ ସଚେତନ ନ ରହିଲେ ରସସୃଷ୍ଟି ଓ ଅର୍ଥ ପ୍ରକାଶରେ ଏବଂ ରସବୋଧ ଓ ଅର୍ଥ-ଗ୍ରହଣରେ ବହୁ ଅସୁବିଧା ଅବଶ୍ୟମ୍ଭାବୀ ।

## କ୍ରିୟାର ଆବେଦନ ଓ ବିଶେଷଣର ଆବେଦନ :

ବିଶେଷଣପାଇଁ କବିତା ଓ କ୍ରିୟା ଲାଗି ଗଳ୍ପ ନାଟକ ପ୍ରଶସ୍ତ ହେଲେ ବି ବହୁ ଗଳ୍ପ ଉପନ୍ୟାସ କବିତାଧର୍ମୀ ହୋଇଥିବାରୁ ବିଶେଷଣବହୁଳ ହୋଇ ପଡ଼ିଥାନ୍ତି । ଏଭଳି ଗଳ୍ପ ଉପନ୍ୟାସର ପାଠକ ସଂଖ୍ୟା କିନ୍ତୁ ପରିମିତ ଓ ସୁନିର୍ଦ୍ଦିଷ୍ଟ । ସାଧାରଣ ପାଠକ ପକ୍ଷରେ ଲେଖାଟିର ମର୍ମ ବୁଝିବା ଲାଗି ବାହ୍ୟସ୍ତରରେ ବହୁକ୍ରିୟାର ପ୍ରମାଣ ଆବଶ୍ୟକ । କାରଣ ସାଧାରଣ ପାଠକର ଚିତ୍ତ ଚକ୍ଷୁଧର୍ମୀ । ସେ ରଙ୍ଗମଞ୍ଚରେ କର୍ତ୍ତ-ମାନଙ୍କର ବହୁକ୍ରିୟା ଆଖି ଆଗରେ ଦେଖିବାକୁ ଚାହେଁ । ମାତ୍ର ଅସାଧାରଣ ପାଠକର ଚିତ୍ତ ଧ୍ୱନିଧର୍ମୀ । ସେ ଘଟଣାର ବାହ୍ୟ କାଣ୍ଡକାରଖାନାରେ ବ୍ୟସ୍ତ ହୋଇପଡ଼େ । ସେ ଆଖିବୁଜି ଶୁଣିବାକୁ ଚାହେ—ଗୋଟାଏ ସ୍ଥିର ସଂହତ ଶାନ୍ତ ଅର୍ଥପୂର୍ଣ୍ଣ ଧ୍ୱନି—ଗୋଟାଏ ଅନିର୍ବଚନୀୟ ସୁର୍-ବା ସଙ୍ଗୀତ । ସାଧାରଣ ପାଠକ ଘଟଣାର କ୍ରିୟା ଓ ପ୍ରତିକ୍ରିୟାମାନ ଦେଖି ଉତ୍ତେଜିତ ହୁଏ—ଉତ୍ସୁକ ହୁଏ ଏବଂ ଏହି ଉତ୍ସୁକତା ଓ ଉତ୍ତେଜନା ମାଧ୍ୟମରେ ସେ ଗୋଟାଏ ବର୍ଣ୍ଣାଢ୍ୟ ଆନନ୍ଦ ଉପଭୋଗ କରେ । ମାତ୍ର ଅସାଧରଣ ପାଠକ ତା'ର ଶାନ୍ତସମାହିତ ଚିତ୍ତ ମଧ୍ୟରେ ଗୋଟାଏ ବିଶିଷ୍ଟଧ୍ୱନିର ଅନୁରଣନ ଚାହେ—ଯାହାକି ତା'ର ଅନ୍ତର୍ଲୋକରେ ବାହ୍ୟଜଗତର ନାନା କ୍ରିୟା ପ୍ରତିକ୍ରିୟାର ନାନା ଘାତ ପ୍ରତିଘାତଜନିତ ଉତ୍ତପ୍ତ ଉତ୍ତେଜନାଟିକୁ ବାଦ୍ ଦେଇ କେବଳ ସେଗୁଡ଼ିକର ଭାବମୟ ଅର୍ଥକୁ ହିଁ ସୂକ୍ଷ୍ମ ରୂପରେ ନିନାଦିତ କରି ପାରିବ । ସେଠି ପୁଣି ତାର ଅନ୍ତଶ୍ଚେତନାରେ ବାହ୍ୟ ଘଟଣାର ଏକ ସୂକ୍ଷ୍ମଗତି ମଧ୍ୟ ସଂଘଟିତ ହୋଇ ଚାଲେ । ସେଥିଲାଗି ବହିର୍ଜଗତର ବହୁ ବିଚିତ୍ର କ୍ରିୟାକର୍ମ ସଙ୍ଗେ ସୁପରିଚିତ ଓ ଅଭିଜ୍ଞ ପାଠକ ହିଁ ଅସାଧାରଣ ପାଠକ ଓ ସେହି ପାଠକ ଲେଖକଠାରୁ ଘଟଣା

ଗୁଡ଼ିକର ସ୍ଥୂଳ ପୁନରାବୃତ୍ତି ଆଶା ନ କରି ସେଗୁଡ଼ିକୁ ବିଶେଷଣ ଭିତରେ ସୂକ୍ଷ୍ମ-ସ୍ଥିତ ଓ ଧ୍ୱନିପିହିତ ହୋଇଥିବାର ଦେଖିବାକୁ ଚାହେଁ । ତେଣୁ ଯଥାର୍ଥରେ ହିଁ କ୍ରିୟାଗୁଡ଼ିକ ସେମାନଙ୍କର ବିଚଳିତ ଗତିବୃତ୍ତିର ସମସ୍ତ ରୂକ୍ଷତା ଓ ଉଗ୍ରତାକୁ ବିସର୍ଜନ ଦେଇ ଏକ ବିଶେଷ ସଂହତ, ସୁକୁମାର ଓ ନିର୍ଯ୍ୟାସିତ ରୂପରେ ବିଶେଷଣଟି ମଧ୍ୟରେ ସମାହିତ ହୋଇ ରହନ୍ତି । ତଦ୍ୱାରା ସେମାନେ ପଦଗୁଡ଼ିକର ଲାଳିତ୍ୟ, ଗାମ୍ଭୀର୍ଯ୍ୟ, ଧ୍ୱନ୍ୟାତ୍ମକତା ଓ ବ୍ୟଞ୍ଜନାଶକ୍ତି ସଂପାଦନରେ ସାହାଯ୍ୟ କରନ୍ତି । ମୋଟ ଉପରେ କ୍ରିୟାଗୁଡ଼ିକ ଦର୍ଶନୀୟ ଓ ବିଶେଷଣଗୁଡ଼ିକ ଶ୍ରବଣୀୟ । କ୍ରିୟାମାନେ ଚିତ୍ର ମାଧ୍ୟମରେ ଧ୍ୱନି ସୃଷ୍ଟି କରିବାର ପ୍ରୟାସ କରନ୍ତି ଓ ବିଶେଷଣମାନେ ଧ୍ୱନି ମାଧ୍ୟମରେ ଚିତ୍ର ଫୁଟାଇବାର ପ୍ରୟାସ କରନ୍ତି । କ୍ରିୟାମାନେ ଦିଅନ୍ତି ପ୍ରମାଣ ଓ ବିଶେଷଣମାନେ ଦିଅନ୍ତି ସିଦ୍ଧାନ୍ତ । କ୍ରିୟାଗୁଡ଼ିକ ବାକ୍ୟକୁ ଗଢ଼ି ଦିଅନ୍ତି ଏବଂ ବିଶେଷଣମାନେ ଯୋଗାନ୍ତି ଶକ୍ତି ।

ସେହି ହେଉଛି ଯଥାର୍ଥ କବିକୃତି ବା ଉତ୍ତମକାବ୍ୟ—ଯେଉଁଠାରେ ଚିତ୍ର ଓ ଧ୍ୱନି ବା ଭାଷାନ୍ତରରେ କ୍ରିୟା ଓ ବିଶେଷଣଗୁଡ଼ିକ ଉପଯୁକ୍ତ ସ୍ଥଳେ ଉପଯୁକ୍ତ ଭାବେ ହିଁ ବ୍ୟବହୃତ ହୋଇଥାନ୍ତି ଏବଂ ପରସ୍ପରର ପରିପୂରକ ହୋଇଥାନ୍ତି ।

ଏ ସମ୍ପର୍କରେ ପୁଣି ଆହୁରି ଗୋଟିଏ ସତ୍ୟ ହେଉଛି—ଯେଉଁ ଲେଖକର ଚିତ୍ତ ବସ୍ତୁମାନଙ୍କର ବହୁ ବିଚିତ୍ର କ୍ରିୟା ପ୍ରତିକ୍ରିୟା ସଙ୍ଗେ ପରିଚିତ, ସେହି କେବଳ କ୍ରିୟାଗୁଡ଼ିକର ଭାବାତ୍ମକ ସଂହତିକୁ ବିଶେଷଣ ମଧ୍ୟରେ ଧ୍ୱନାତ୍ମକ କରି ରଖିପାରେ । ପୁଣି ବିଶେଷଣଗୁଡ଼ିକର ଏହି ଧ୍ୱନାତ୍ମକ ଓ ସମାହିତ ପିହିତ ଅର୍ଥସମ୍ପଦକୁ ନ ବୁଝି କେହି ଲେଖକ ଯଦି କେବଳ କ୍ରିୟା ବାହୁଲ୍ୟରେ ପୃଷ୍ଠା ପରେ ପୃଷ୍ଠା ଲେଖିଯାଏ ତେବେ ତା'ର ରଚନା ନିରୁଦ୍ଦେଶ୍ୟ, ଅସୁନ୍ଦର, ଓ ଅର୍ଥହୀନ ବାଚାଳତା ଦୋଷରେ ଦୁଷ୍ଟ ହୋଇପଡ଼େ ।



# କପି ଓ କପିଧରା ସମସ୍ୟା

ଏପରି କେତେକ ଲେଖା ପତ୍ରିକା ସମ୍ପାଦକଙ୍କ ହସ୍ତଗତ ହୁଏ—ଯାହାର ବିଷୟବସ୍ତୁ ହେଲା ଅମୁକ ଔପନ୍ୟାସିକଙ୍କର ସମୁକ ଉପନ୍ୟାସର କଥାବସ୍ତୁ ବଙ୍ଗଳାର ତମୁକ ଉପନ୍ୟାସରୁ ଅବିକଳ ନିଆଯାଇଛି । କିମ୍ବା ଅମୁକ କବିଙ୍କର ସମୁକ କବିତାର ମଝି ଚାରିଧାଡ଼ି ତମୁକ ଫରାସୀ କବିତାର ଇଂରାଜୀ ଅନୁବାଦର କେତୋଟି ଧାଡ଼ିର ଅବିକଳ ଅନୁବାଦ । ଏଇ ଅଭିଯୋଗ ନବୀନଙ୍କଠାରୁ ପ୍ରବୀଣଙ୍କଯାଏ ସମସ୍ତଙ୍କ ଉପରେ କରାଯାଉଛି । ଅବସ୍ଥା ଏପରି ହେଲାଣି ଯେ "ମାଟିର ମଣିଷ" "ଅମୃତର ସନ୍ତାନ" "ଛା" ଓ "ନର-କିନ୍ନର" "ଅନ୍ଧ ଦିଗନ୍ତ" ଆଦି ପ୍ରଖ୍ୟାତ ଓଡ଼ିଆ ଉପନ୍ୟାସଗୁଡ଼ିକ ଉପରେ ମଧ୍ୟ କପି ଅପବାଦର କାଳିମା ବୋଳିବାକୁ କପିଧରାମାନଙ୍କର ଅଭାବ ନାହିଁ । କେତେକ ଓସ୍ତାଦ୍ କପିଧରା (ସାହିତ୍ୟିକ ଡ଼ିଟେକ୍‌ଟିଭ୍) ଅଛନ୍ତି, ଯେଉଁମାନେ ଓଡ଼ିଆ ସାହିତ୍ୟର ଆଦିପର୍ବରୁ ଆଜିପର୍ଯ୍ୟନ୍ତ ସବୁ କବିଙ୍କୁ "ଚୋର" ବୋଲି ପ୍ରମାଣିତ କରିଦେବେ ।

ସେଦିନ ଜଣେ ଅତି ବୁଦ୍ଧିମାନ୍ ( ? ) ସାହିତ୍ୟିକ ( ! ) ଖୁବ୍ ବଡ଼ପାଟିରେ କେତେକ ଭିନ୍ନ ପ୍ରଦେଶୀ ପଦସ୍ଥମାନଙ୍କ ଆଗରେ ବାହାଦୂରୀ ଗଳାରେ ଯାହା କହୁଥିଲେ ତା'ର ସଂକ୍ଷିପ୍ତ ବିବରଣୀ ନିମ୍ନ ରୂପ—

"ଶାରଳା, ଜଗନ୍ନାଥ, ବଳରାମ ଆଦି ମୌଳିକ ନୁହନ୍ତି—ବ୍ୟାସ ବାଲ୍ମୀକିଙ୍କୁ ଅନୁବାଦ କରିଛନ୍ତି । ଉପେନ୍ଦ୍ର ଭଞ୍ଜ ନୈଷଧଙ୍କର ଓଡିଆ ସଂସ୍କରଣ । ଅଭିମନ୍ୟୁ ରୂପ-ଗୋସ୍ୱାମୀଙ୍କର ନକଲନବିଶ । ଗୋପାଳକୃଷ୍ଣ, କବିସୂର୍ଯ୍ୟ ଓ ବେଣୁଧର ଆଦି ଚଣ୍ଡୀ ଦାସ, ବିଦ୍ୟାପତିଙ୍କ ଗ୍ରନ୍ଥାବଳମ୍ବନେ ଲେଖିଛନ୍ତି । ରାଧାନାଥଙ୍କ କାମ ହେଲା ସଂସ୍କୃତ ଓ ଇଂରାଜୀରୁ ଭାବ ଓ କଥା ଆଣି ଓଡ଼ିଆରେ ଥୋଇଦେବା । ଗଙ୍ଗାଧର ପଢ଼ିବା ଅପେକ୍ଷା କାଳିଦାସ ପଢ଼ିବା ଭଲ । ମଧୁସୂଦନଙ୍କ ଲେଖା ବିଦ୍ୟାସାଗର ଓ ବଙ୍ଗଳାର ବ୍ରାହ୍ମକବିମାନଙ୍କର ଚମତ୍କାର ଓଡ଼ିଆନୁବାଦ । ଆଉ ଫକୀରମୋହନ ? ସେପେଣ୍ଟେ

ମେଡ଼ିସିନ୍ କୁଆଡ଼େ ତାଙ୍କ ପେଟେଣ୍ଟ ନୁହ । ଜାପାନରୁ ବଙ୍ଗଳାବାଟେ ଆସି ତାଙ୍କ ଗଳ୍ପସ୍ୱଳ୍ପରେ ପଶିଯାଇଛି । ପୁଣି ତାଙ୍କ ଆତ୍ମଜୀବନୀ ଉପରେ ବି ବଙ୍କିମଚନ୍ଦ୍ରଙ୍କ ପ୍ରଭାବ ପଡ଼ିଛି ।

ଓଡ଼ିଶୀ ସଙ୍ଗୀତ କର୍ଣ୍ଣାଟକୀ ଓ ହିନ୍ଦୁସ୍ତାନୀର ମିଶ୍ରପ୍ରଭାବ । ଓଡ଼ିଶୀ ନୃତ୍ୟଟା ଭାରତ ନାଟ୍ୟମ୍ର ରକମଫେର୍ । ଓଡ଼ିଶୀ ଶିଳ୍ପ ଉପରେ "ଖଜୁରି ହୋ"ର ପ୍ରଭାବ ଅତି ସ୍ପଷ୍ଟ ।

ମୋଟ୍ କଥା—ଓଡ଼ିଶା ସିଂହାସନରେ କୌଣସି ରାଜା ମୌଳିକ ନୁହନ୍ତି । ଓଡ଼ିଆସାହିତ୍ୟରେ ବି କୌଣସି କବି ମୌଳିକ ନୁହନ୍ତି । ଓଡ଼ିଆଭାଷାଉପରେ ବି ପଡ଼ିଛି ବଙ୍ଗଳା, ଆସାମୀ, ହିନ୍ଦୀର ଜସ୍ତୀପ୍ରଭାବ । ବାଶ୍—କଥା ଛୁଟିଗଲା ।

**କପିଧର୍ମ ପ୍ରବଣତା :**

ଏହି ଅପୂର୍ବ ପାଣ୍ଡିତ୍ୟପୂର୍ଣ୍ଣ ବାହାଦୁରୀ ଉକ୍ତ ଯେଉଁ ବିଜ୍ଞମ୍ମନ୍ୟମାନଙ୍କର— ସେମାନଙ୍କର ଏହି ମନୋବୃତ୍ତିକୁ ବିଶ୍ଳେଷଣ କରି ତା'ର ନାମ ଦିଆଯାଉ "କପିଧର୍ମ-ପ୍ରବଣତା", ଓ ଏହିପ୍ରକାର ପ୍ରବଣତାର କାରଣ ବହୁବିଧ ।

(କ) ଅନ୍ୟର ସୁନାମପ୍ରତି ଏକ ଅସହିଷ୍ଣୁ କାତରତା । (ଯାହାଯୋଗୁଁ କପି-ଧର୍ମୀମାନେ ପ୍ରାୟଶଃ ଅମ୍ଳରୋଗୀ) ।

(ଖ) ଆପଣା ଜନ୍ମ-ସୂତ୍ରର ବୈଧତା ଉପରେ ଘୋର ସଂଶୟ । (ଫଳରେ ଅଧିକାଂଶସ୍ଥଳେ ମାନସିକ ବିକୃତି) ।

(ଗ) ଆପଣାର ବ୍ୟକ୍ତିତ୍ୱ ଉପରେ ସନ୍ଦିହାନତା । (ତସ୍ୟ ଫଳଂ ହୀନମ୍ମନ୍ୟତା)

(ଘ) "ନିଜେ ଚୋର ତେଣୁ ଅନ୍ୟମାନେ ବି ଚୋର । ନିଜେ ମିଥ୍ୟାବାଦୀ ତେଣୁ ଅନ୍ୟ କେହି ସତ୍ୟବାଦୀ ନ ହୋଇ ପାରନ୍ତି, ନିଜେ ନୀଚମନା ତେଣୁ ଏ ଜଗତରେ ଉଚ୍ଚମନା କିଏ ରହିଲେ" ଏହିପରି ଏକ ଈର୍ଷା-ସଞ୍ଜାତ ମାନସିକତା । (ଯାହା ଫଳରେ କପିଧର୍ମୀମାନଙ୍କର ପ୍ରାୟଶଃ ନୈତିକ ଅଧଃପତନ) ।

(ଙ) ହଠାତ୍ ଅନ୍ୟର ପ୍ରତିଷ୍ଠିତ ସମ୍ମାନର ହାନି କରିଦେଇ ନିଜେ ଏକ ବାହାଦୁରୀ ମାରିନେବାଲାଗି ଏକ ଦୟନୀୟ ପ୍ରଚେଷ୍ଟା । (ଯାହା ସର୍ବଦାଇ ବିଫଳ ହୁଏ) ।

ହିସାବକରି ଦେଖାଯାଇଛି—ଓଡ଼ିଶାରେ ଏହି କପିଧର୍ମୀମାନଙ୍କ ସଂଖ୍ୟା ଅନୁପାତରେ ସର୍ବାଧିକ । ଜଣେ ସାହିତ୍ୟିକ ଦୁଃଖ ପ୍ରକାଶ କରୁଥିଲେ—"ଓଡ଼ିଶାରେ ଲେଖକମାନଙ୍କ ଅପେକ୍ଷା କପିଧର୍ମୀମାନଙ୍କ ସଂଖ୍ୟା ବଳି ପଡ଼ିଲଣି ।"

ମାତ୍ର ଆମେ ଅନୁସନ୍ଧାନ କରି ଦେଖିଲୁ—ଏହା ସମ୍ପୂର୍ଣ୍ଣ ସତ୍ୟ ନୁହେଁ । ସତ୍ୟର ଚରମ ଅହଂକାରିତା ମାତ୍ର ।

କାରଣ ଆଉ ଜଣେ ପ୍ରବୀଣ ସାହିତ୍ୟିକ ସେଦିନ ଘୋର ଦୁଃଖରେ ମୂହ୍ୟମାନ ହୋଇ କହୁଥିଲେ - "ଅହୋ ! ଓଡ଼ିଆ ସାହିତ୍ୟର କି ଅଧଃପତନ ଆସନ୍ନ ! ! ଆଜି-କାଲି ଛତୁପରି ଲେଖକ ଓ ଲେଖାମାନ ବାହାରିଲେଣି ହୋ !!!"

ତାଙ୍କ ବେଳଠୁଁ ଏବେ ଲେଖକସଂଖ୍ୟା ବୃଦ୍ଧି ପାଇବାର କାରଣସ୍ୱରୂପ ସେ କହିଲେ—

ଏକମାତ୍ର କାରଣ—ଆମେ ତ ଆଉ ସେକାଳେ ଏମିତି କପି କରୁ ନ ଥିଲୁ !! ଏମାନେ ତ ବିଦେଶୀ ସାହିତ୍ୟଟିଏ ଖୋଲିଲେ—(ସେ କହିଲେ ବଙ୍ଗଳା ସାହିତ୍ୟ) ବାସ୍ ଉଣ୍ଡାରିଗଲେ ଓଡ଼ିଆ ଭାଷାରେ ଆମୂଳଚୂଳ । ଆଉ ତ ଆମଭଳି ଚିନ୍ତା କରିବାକୁ ପଡ଼ୁନି !! ଲେଖ—କେତେ ଲେଖିବ !!"

ଏହାଙ୍କ ମତରେ ଦୁର୍ଭାଗ୍ୟବଶତଃ ଓଡ଼ିଶାରେ କପିଧର୍ମ ବେଶୀ ନାହାନ୍ତି ବୋଲି କପି ବୃଦ୍ଧି ପାଉଛି ଓ ତାହାର ଅଧଃପତନ ହେଉଛି !!

ଏସବୁ ତ ଶୁଣିଲେ, ମାତ୍ର ଭାବନ୍ତୁ ତ—କପି କ'ଣ ପ୍ରକୃତରେ ଆମେ କରୁଥାଉଁ ? ବେଶୀ କରୁଥାଉଁ ? ଆମେ ଯାହା ବା କରୁଛୁ—ତାହା କ'ଣ "ଉପଯୁକ୍ତ ଭାବେ ସଠିକ୍‌ସତ" କପି ।

ପ୍ରତ୍ୟେକ ଲେଖକଙ୍କୁ ସବିନୟ ନିବେଦନ—ଯେ ସେମାନେ କପିଧର୍ମୀମାନଙ୍କ ସଙ୍ଗେ ଲୁଚକାଳି ନ ଖେଳି ଓ ସେମାନଙ୍କୁ ବେଳାଉ୍ କରିବାକୁ (ଯାହା କରିବା ନିତାନ୍ତ ଦୁଃସାଧ୍ୟ, ଦାନ୍ତ ନ ଖେଞ୍ଚିବାଇ ନିଜକୁ ଓ ନିଜର ଲେଖାକୁ ସମୀକ୍ଷଣ କରିବା ଉଚିତ । ପ୍ରତ୍ୟେକ ମା' ଜାଣେ—ତା' ପିଲାର ପ୍ରକୃତ ବାପ କିଏ ? ପ୍ରତ୍ୟେକ ଲେଖକ ସେମିତି ଜାଣେ—ତା' ଲେଖାର ଅସଲ ସୁମର । କୌଣସି କପିଧର୍ମ (ସେ ଯେତେ ଓସ୍ତାଦ୍, ବାଙ୍କ ହେଉ) ଯେମିତି ଆପଣଙ୍କ ଲେଖାକୁ କପି ବୋଲି ସର୍ବତୋଭାବେ ପ୍ରମାଣ କରି ପାରିବେ ନାହିଁ (ସେ ଯେତେ ଉଦାହରଣ ଦିଅନ୍ତୁ ପଛକେ ! !) ସେମିତି ଆପଣ ବି ଯେତେ ଜୋର୍‌ଦାର ମୌଳିକ ହୁଅନ୍ତୁ ନା କାହିଁକି ଆପଣଙ୍କ ଲେଖା କପି ନୁହେଁ ବୋଲି ପୂରା ପ୍ରମାଣ କରି ପାରିବେ ନାହିଁ କାହିଁକି ?

ମଞ୍ଜିଟିଏ ମାଟିରେ ପୋତିଲେ—ଗଛ ହେଲା – ଫୁଲ ଫୁଟିଲା – ଫଳ ଧରିଲା—ପାଚିଲା । ପାଚିଲା ଫଳକୁ ଦେଖି ମାଟି କହିଲା – ମୋର ପ୍ରଭାବ । ପାଣି କହିଲା—ମୋର ପ୍ରଭାବ । ଆଲୋକ କହିଲା—ମୋର ପ୍ରଭାବ । କୃଷକ କହିଲା —ମୋର କ ଜମା ପ୍ରଭାବ ନାହିଁ ?

କାହାର ପ୍ରଭାବ ନାହିଁ କହନ୍ତୁ ? ?

ପିଲାଟିଏ ଜାତ ହେଲା—ବଢ଼ିଲା । ବାପା କହିଲେ—ଅବିକଳ ତା'ର ମା'ର ଆଖି । ମା' କହିଲେ—ତା'ର ବାପର ଅବିକଳ ନାକ ଆଣିଛି । ବୁଢ଼ା ବାପା କହିଲେ —ଏ ସ୍ୱରେ ତା' ବୁଢ଼ୀ ମାଆର ଓଠ ସ୍ୱୈର କରଛି । ବୁଢ଼ୀମା' କହିଲେ ସ୍ୱା କପାଳଟା ଏକା ଅବିକଳ ତା' ଜେଜେବାପର କପାଳ ପରିକା !

ଏଭଳି ପ୍ରଭାବ ଓ ଏଭଳି ସ୍ୱେଷ୍ଟି ଲାଗି ଗଛ ଲଜ୍ଜିତ ନୁହେଁ—କି ମଣିଷ ବି ଲଜ୍ଜିତ ନୁହେଁ । ବରଂ ମଣିଷ ଆପଣାର ଚେହେରାରେ ନିଜର ମୌଳିକତା ( ସବୁ ମଣିଷର ଏତେକ ଅଛି ନିଶ୍ଚୟ । ) ସଙ୍ଗେ ପିତାମାତା ଓ ନିଜ ବଂଶ-ପରମ୍ପରାର ଅକ୍ଷୁର୍ଣ୍ଣ ଅବିକଳ ପ୍ରଭାବଯୋଗୁଁ ଗର୍ବିତ ହୁଏ—ନ ଥିଲେ ମ୍ରିୟମାଣ ହୋଇପଡ଼େ ।

ମାନ୍ୟବର ମହାବଳ୍କ କପିଧର୍ମବୃନ୍ଦ !

ଶୁଣିବାହେଉ ! ଆପଣ କ'ଣ ଖୁବ୍ ଦୁଃଖିତ ହେବେ—ଯଦି ଅମୁକଙ୍କ ଲେଖାରେ ରବି ଠାକୁର, ସେକ୍‌ସପିୟର, କାଳିଦାସ-ଗେଟେ—ଉପନିଷଦ୍ ଓ ଭଗବତ୍ ଗୀତାର ଭାବ ବା ଚିନ୍ତା ଅନୁରୂପ କିଛି ଦେଖନ୍ତି ? କାହିଁକି ଦୁଃଖିତ ହେବେ ? ଆପଣ କ'ଣ ଚାହାନ୍ତି – ସାହିତ୍ୟିକ ପୁରା ମୂର୍ଖଟିଏ ହେଉ—ସେ କିଛି ନ ପଢ଼ୁ – ଯଦି ପଢ଼ିବ—କିଛି ମନେ ନ ରଖୁ—ଯଦି ମନେ ରହିଯାଉଛି—ତେବେ କୌଣସି ଉଚ୍ଚ ଭାବ ବା ଚିନ୍ତା ତା'ର ଚେତନାକୁ ନ ଭେଦୁ ?

ତା' ହେଲେ ଆଜ୍ଞା ସେ ଲେଖିବ କ'ଣ ? ତା'ର ଅନୁଭୂତି ଓ ଚିନ୍ତାର ବୀଜ କୋଉଠୁ ଆସିବ ? ସେ ଏଇ ରୂପ-ରସ-ଗନ୍ଧ-ଶବ୍ଦ ଓ ସ୍ପର୍ଶମୟ ପୃଥିବୀରୁ ଘେନିବ ଇନ୍ଦ୍ରିୟଦ୍ୱାରରେ—ମନଦ୍ୱାରରେ ଘେନିବ ଏ ପୃଥିବୀର ଯାବତୀୟ ଚିନ୍ତା ଓ ଜ୍ଞାନ—ହୃଦୟଦେଇ ଘେନିବ ଏଠାର ଯେତେ ଭାବ ଯେତେ ରସ । ଆଉ ଚୈତନ୍ୟରରେ ଘେନିବ ଯେତେ ଅଲୌକିକ ଉପଲବ୍‌ଧି ଆଉ ଦିବ୍ୟ ଦର୍ଶନ । ଏହି ଘେନିବା ସ୍ୱର୍ଗରେ

ଆସିଯିବ ତା' ଭିତରକୁ ବାହ୍ୟ ପ୍ରକୃତିର ପ୍ରଭାବ ଓ ଚିନ୍ତା, ଜ୍ଞାନ, ଅଭିଜ୍ଞତାରେ ପୂର୍ବାଗ୍ରଜଙ୍କର ପ୍ରଭାବ । କୌଣସି ଲେଖାରେ ଏଭଳି ବୀଜ-ମନ୍ତ୍ରବତ୍ ପ୍ରଭାବମାନ ନ ଥିଲେ ସେ ଲେଖାରେ କେବେ ବି ନ ଥିବ ମୌଳିକତା । ମାନ୍ୟବର ମହାବାଙ୍କ କପିଧରମାନେ କରୁଣ ହେବେ—ପ୍ରଭାବ ନ ପାଇ ଓ ତସ୍ୟ ହେତୁ ମୌଳିକତା ବି ନ ପାଇ ।

ତେବେ କପିଧରମାନଙ୍କୁ ଧରି ଫାଶୀ ଦେବାଲାଗି ସ୍ଲୋଗାନ ଦେବା ମଧ୍ୟ ଅନୁଚିତ । ସଚେତନ କପିଧରମାନେ ନିଶ୍ଚୟ ଆମର ଉପକାରୀ । ସେମାନେ ନ ଥିଲେ, ଆମ ଭିତରୁ ଅନେକେ (ସମ୍ପାଦକ ସ୍ୱୟଂ ତ ନିଶ୍ଚୟ !) ଆଦୌ ଚିନ୍ତା କରିବାର—ଗଭୀରକୁ ପ୍ରବେଶ କରିବାର ଓ ଅନୁଭୂତି ଉପଲବ୍ଧିର କ୍ଷେତ୍ରକୁ ବୃଦ୍ଧି କରିବାର ଦାୟିତ୍ୱପୂର୍ଣ୍ଣ ପରିଶ୍ରମ କରିବାକୁ କୁଣ୍ଠିତ ହୁଅନ୍ତେ ଓ "ମନ୍ଦଃକବି-ଯଶଃ ପ୍ରାର୍ଥୀ"—ପ୍ରବଣତାରୁ ନିଶ୍ଚୟ କପି କରନ୍ତେ । କେତେକ ଯେ କପି କରୁଛନ୍ତି ତାହା ଠିକ୍, ମାତ୍ର ସେମାନଙ୍କୁ ଧରପଗଡ଼ କରିବାଲାଗି ଦଳେ କପିଧରି ସବୁ କାମ-ଦାମ ଛାଡ଼ି ଠେଙ୍ଗା ବାଡ଼ି ଧରି ବାହାରିବାରେ ବି ବିଶେଷ କିଛି ଲାଭ ନାହିଁ । କାରଣ କପିଧରମାନଙ୍କର ବିନା ହଟ୍ଟଗୋଳରେ ବି କାଳେ ଏହି କପିବାନ୍ମାନେ ' ଆପଣାଛାଏଁ ସାହିତ୍ୟରୁ ଅପସରି ଯିବେ – ଯେତେ ସେମାନେ ଏକାଡ଼େମୀର ମେଡ଼େଲ୍ ମାରି ବୁଲନ୍ତୁ ବା ବହି ବିକ୍ରୀ-ଲବ୍ଧ-ଧନରେ ଲକ୍ଷପତି ହୁଅନ୍ତୁ ।

କପିବାନ୍ମାନେ ମଧ୍ୟ ସାହିତ୍ୟକର ମୌଳିକ ମର୍ଯ୍ୟାଦା ଚାହାନ୍ତି ନାହିଁ । ସେମାନଙ୍କର ଲକ୍ଷ୍ୟ "ଲାଭ-ଶୁଭ" ଯଶ । ତାହା ଚୋରିରୁ ହେଉ—ଡକାୟତିରୁ ହେଉ ବା କଳାପୋତେଇ କଳାବଜାରରୁ ହେଉ ।

ମାତ୍ର ସଚ୍ଚା ସାହିତ୍ୟିକ-ସ୍ରଷ୍ଟାଟିଏ । ସେ ଖଟେ । ଅମଳ କରେ । ଆପଣାର ଖଟଣୀ ଓ ଉତ୍ପାଦନ ଲାଗି ଏକ ପବିତ୍ର ନିଶାହ ଗୌରବାନନ୍ଦ ଉପଭୋଗ କରେ ଆପଣା ଭିତରେ କାହାରି ପ୍ରମାଣପତ୍ରର ଅପେକ୍ଷା ନ ରଖି । ତା' କ୍ଷେତ ଛଅମାଣର ହେଉ ବା ଆଠଗୁଣ୍ଠ ହେଉ ! ତା' ଅମଳ ପୁଡ଼ୁଗଟିଏ ହେଉ ବା ଭରଣ ଭରଣ ହେଉ ! !

ସାମାଜିକ କ୍ଷେତ୍ରରେ ଚୋର, ଡ଼କାଏତ ଓ କଳାବଜାରୀଙ୍କୁ ଧରିବାଲାଗି ତୁରନ୍ତ କଠୋର ବ୍ୟବସ୍ଥା ହେବା ଦରକାର, ମାତ୍ର ସାହିତ୍ୟରେ ତା'ର ଏମିତି କିଛି ଜରୁରୀ ଆବଶ୍ୟକତା ନାହିଁ ।

## କପିଧର୍ମଗଣ ନୋଟ୍ କରନ୍ତୁ :

ନାୟକର ପିତା ଜଣେ ରକ୍ଷିତା ରଖିଥିଲେ—ତା'ଆଡ଼ୁ ଝିଅଟିଏ ଜନ୍ମିଲା··· ଗୋଟିଏ ଖାଇ ମକଦ୍ଦମାରେ ସର୍ବସ୍ୱାନ୍ତ ହେଲା···ଗରିବ ପିଲାଟି ଟିଉସନ୍ କରି ବି. ଏ. ଯାଏ ପଢ଼ିଗଲା····ବାବାଜୀଙ୍କର ମାତାଟିଏ ଥିଲା ଓ ସେ ତା ସଙ୍ଗେ ଅବୈଧ ସମ୍ପର୍କ ରଖିଥିଲେ···ଜମିମାଲିକଙ୍କୁ ଗରିବ ଭାଗଚାଷୀ ବାଡ଼େଇଲା···ସମୁଦ୍ରରେ ଜାହାଜ ବୁଡ଼ିଗଲା···ନାୟକ ଜଣେ ଝିଅକୁ ପ୍ରେମ କରି ବିବାହ ନ କରି ହଠାତ୍ ବିଲାତ ଚାଲିଗଲେ······ନାୟିକା ନଦୀକୁ ଡେଇଁପଡ଼ି ଆତ୍ମହତ୍ୟା କଲା···ଟ୍ରେନ୍ ଦୁର୍ଘଟଣାରେ ନାୟକ ପାଗଳ ହୋଇଗଲା ଓ ନାୟିକାକୁ କାଛୁଆ ଲାଗି ଦେଖି ମଧ୍ୟ ଚିହ୍ନି ପାରିଲା ନା··· । ନାୟିକା ଯାହାଙ୍କୁ ନ ଜାଣି ପ୍ରେମରେ ପଡ଼ି ବିବାହ କଲେ ସେ ପରେ ଜଣାପଡ଼ିଲେ ବିବାହିତ ବୋଲି···ଚତୁର ବଦମାସ୍ ଟିଏ ସରଳ ଲୋକଙ୍କୁ ଠକିଦେଲା· ନାୟକର ଘରଘର ଦୈବାତ୍ ପୋଡ଼ିଗଲା···ନାୟିକାର ଗାଁ ପୋଖରୀରେ କଇଁଫୁଲ ଫୁଟେ···

ଏବଂ ଏହିପରି ବହୁ ଘଟଣା ସ୍ୱତନ୍ତ୍ରଭାବେ, ଖଣ୍ଡିତଭାବେ, ଏପରିକି ସଂଲଗ୍ନ-ଭାବେ ମଧ୍ୟ ଏ ପୃଥିବୀରେ ସଚରାଚର ଘଟିଥାଏ । ଏ ଘଟଣାମାନ ଆଖିରେ ଦେଖି ଗ୍ରହଣ କରି ହେଉ ବା କାହାଠାରୁ ଶୁଣି ହେଉ ବା କୌଣସି ସିନେମା ବା ଗଳ୍ପ ଉପନ୍ୟାସରୁ ଗ୍ରହଣ କରି ହେଉ—ନେଲେ କପିଧର୍ମମାନଙ୍କର ଉଦ୍ବିଗ୍ନ ହେବାର କାରଣ ନାହିଁ । କାରଣ କେଉଁଠି କେଉଁ ପୋଖରୀରୁ ମାଛ ଧରିଲା—ତଦ୍ବିଷୟେ ମସ୍ତିଷ୍କ ନ ଘୂରାଇ—ମାଛ ଚାଖନ୍ତୁ—ମିଠା ନା ପିଠା !

## କବିତାରେ ବି ସେମିତି :

ଦରିଦ୍ର ଅତ୍ୟାଚାରିତ ପ୍ରତି କରୁଣାଭାବ—ଈଶ୍ୱରଙ୍କ ପ୍ରତି ଭକ୍ତିଭାବ—ସୁନ୍ଦରୀ ନାରୀଟିର ସୌନ୍ଦର୍ଯ୍ୟ-ସ୍ତୁତି—ପ୍ରେମିକା ପ୍ରତି ପ୍ରେମଭାବ—ଶତ୍ରୁ ପ୍ରତି କ୍ରୋଧଭାବ ଓ ସେ ଭାବଗୁଡ଼ିକର ପ୍ରକାଶକ୍ଷମ କେତେକ ଭାବବାଚକ ଶବ୍ଦ, ବାକ୍ୟ ଓ ବାକ୍ୟାଂଶାଦି ବହୁ ସମୟରେ ଏକା ହୋଇଯାଏ । ରବୀନ୍ଦ୍ରନାଥଙ୍କ ସଙ୍ଗେ ରବିବାବୁଙ୍କର ବା ଖାମଖେଇଙ୍କ ସଙ୍ଗେ ଟମ୍, ହାରି, ଜନ୍ ପ୍ରମୁଖ କବିମାନଙ୍କର । କାରଣ ସବୁ ପ୍ରକାର ଚେତନାର ଏକ ସୂକ୍ଷ୍ମ ବଳୟ ରହିଛି; ସେହି ବଳୟ ସ୍ୱିଡେନ୍‌ଠାରୁ ଢେଙ୍କାନାଳ-ଯାଏ ବି ବିସ୍ତାରିତ । ଯାହା ହୃଦୟର ଭାବଗତ ଏକାଗ୍ରତା ସେ ବଳୟକୁ ସ୍ପର୍ଶ କଲା—ସେ ସେହି ଭାବଚିନ୍ତାକୁ ପାଇପିବ—ଏପରିକି ସେହି ପ୍ରକାଶ ଢଙ୍ଗ ମଧ୍ୟ ପାଇପିବ । ଜଡ଼ଜଗତରେ ବି ଏକାକଥା । ଏକାପ୍ରକାର ରାସାୟନିକ ସଂଯୋଗ ଓ ମୌଳିକ

ଉପାଦାନ - ସହଯୋଗରେ ପାରସ୍ୟର ଗୋଲାପ ଅବିକଳ କାଶ୍ମୀରର ଗୋଲାପ ଭଳି ହୋଇଥାଏ । ଚିନ୍ତାକ୍ଷେତ୍ରରେ ବି ଚେତନାର ମୌଳିକ ଉପାଦାନଗୁଡ଼ିକର ସୂକ୍ଷ୍ମ ସହଯୋଗ ବିଯୋଗ ଅନୁଯାୟୀ "ଚିନ୍ତା" ମାନ ସାଦୃଶ୍ୟ ପ୍ରାପ୍ତ ହୁଅନ୍ତି ।

## ତେବେ କପି କରନ୍ତି କାହିଁକି ?
## ଓ କେଉଁମାନେ କପି କରିଛନ୍ତି ?

(କ) ଯେଉଁ ଲେଖକମାନେ ହଠାତ୍ ବଡ଼ କଥା କହିବା ପାଇଁ ବ୍ୟଗ୍ର ହୋଇପଡ଼ନ୍ତି—(ତାହା ଅପେକ୍ଷାକୃତ ଶ୍ରେଷ୍ଠ ଉଣ୍ଟରେ ଅସମ୍ଭବ—ତେଣୁ ଖାପ୍ଛଡ଼ା ଶୁଭେ ।)

(ଖ) ଅଯଥା ଯଶୋଲିପ୍ସୁ ଯେଉଁମାନେ (ଫଳଶ୍ରୁତି ଅ ହେବା ।)

(ଗ) ନିଜକୁ ପାଶ୍ଚାତ୍ୟ କବିମାନଙ୍କ ଭଳି ଦେଖାଇବା ପାଇଁ ଏକ ଦସ୍ତୁମାସ୍ତ ହାସ୍ୟାସ୍ପଦ ଲୋଭ ଯେଉଁମାନଙ୍କର—

(ଘ) ନିଜ ଅନୁଭବ ଓ ଚିନ୍ତା ଉପରେ ଯେଉଁମାନଙ୍କର ଅବିଶ୍ୱାସ ଓ ଅନାସ୍ଥା-ଭାବ ଆସେ—

(ଙ) ପୁଣି ନିଜେ କିଛି ଚିନ୍ତା କରିବା ବା ଅନୁଭବ କରିବାପାଇଁ ଓ ଅଭିଜ୍ଞତା ଅର୍ଜନରେ ଯେଉଁମାନଙ୍କର ଥାଏ ଏକ ଅଳସ ଅନିଚ୍ଛୁକତା—

(ଚ) ଏବଂ ଶେଷକଥା ହେଉଛି—ନିଜର କ୍ଷୁଦ୍ରତାକୁ ସହ୍ୟ କରିବା ଭଳି ବ୍ୟକ୍ତିତ୍ୱରେ ଉଦାରତାର ଅଭାବ ଯେଉଁମାନଙ୍କର—

ସେହିମାନେ ହିଁ ନିରୁପାୟଭାବେ କେବେ ଜାଣିକରି ଓ କେବେ ଅଜାଣତରେ କପି କରିପକାନ୍ତି ।

## କପିବିନ୍ତମାନେ ଟିପି ନିଅନ୍ତୁ :

ଆପଣ ଯଦି ପ୍ରକୃତରେ ଲେଖକ ଓ ଯଦି ପ୍ରକୃତରେ ଆପଣ କପି କରିବା ଭଳି ଦୂରଭ୍ୟାସରୁ ମୁକ୍ତ ହେବାକୁ ଚାହୁଁଥାନ୍ତି—ତେବେ ଦୟାକରି ଶୁଣନ୍ତୁ—

ପ୍ରଥମେ ନିଜର ବିଷୟବସ୍ତୁ ସଙ୍ଗେ ନିଷ୍ଠାର ସହିତ ଜଡ଼ିତ ହୋଇ ପଡ଼ନ୍ତୁ । ନିଜର ପରିବାର, ସମାଜ ଓ ବିଶ୍ୱର ଦାୟିତ୍ୱରୁ ଯେତେ କମ୍ ଅଂଶ ହେଲେ ବି କିଛି

ହେଲେ ନିଜ ମୁଣ୍ଡ ଉପରକୁ ଆଣନ୍ତୁ । ଦୁଃସାହସର ସଙ୍ଗେ 'ସତ୍ୟ' ସହିତ ମୁହାଁମୁହିଁ ହୋଇ ଯାନ୍ତୁ । ଜୀବନର ଜ୍ୱାଳା ଯନ୍ତ୍ରଣା ଭୋଗିବାପାଇଁ ପ୍ରସ୍ତୁତ ହୁଅନ୍ତୁ ଓ ଭୋଗିଲ ମାଜେ ତହିଁରୁ ଅର୍ଥ ଖୋଜନ୍ତୁ । ବିଦେଶୀ ଭାବ ଓ ଚିନ୍ତା ଉପଭୋଗ କରନ୍ତୁ, ମାତ୍ର ହସାଖିଆ ବୁଦ୍ଧି ନେଇ ସେଗୁଡ଼ିକୁ ଆତ୍ମସାତ୍ କରନ୍ତୁ ନାହିଁ । ରସିକ ଲୋକ ଭଳି ସେଗୁଡ଼ିକୁ ଆତ୍ମଗତ କରନ୍ତୁ । ନିଜକୁ ଖୁବ୍ ବଡ଼ ଓ ଦରକାରୀ ବୋଲି ମନେ କରିବା ଉଚିତ । ନିଜ ଚିନ୍ତା ଓ ଅନୁଭୂତିର ଓଜନ ଜାଣିବାଲାଗି ଅନ୍ୟ ଉପରେ ବିଶେଷ ନିର୍ଭର କରନ୍ତୁ ନାହିଁ । ନିଜର ଓଜନ ବିଷୟରେ ଅନ୍ୟଠାରୁ ଶୁଣି ପାରନ୍ତି, ମାତ୍ର ତା' ଉପରେ ଖୁବ୍ ବେଶୀ ଆସ୍ଥା ରଖିବା ଭଲ ନୁହଁ । ସେ ମତ ଆପଣଙ୍କ ସପକ୍ଷରେ ଯାଉ ବା ବିପକ୍ଷରେ ଯାଉ—ସେଥିରେ ଅନାସକ୍ତ ରହନ୍ତୁ । କାରଣ ଏ ଜଗତରେ କୌଣସି ଓଜନ-ଯନ୍ତ୍ର ଠିକ୍ କାମ କରୁଥିବାର ପ୍ରମାଣ ନାହିଁ । ମୋଟାମୋଟି ଓଜନଟାଇ ଜଣା ପଡ଼ି ପାରେ ଖୁବ୍ ବେଶୀ ହେଲେ । ପୁଣି ସାହିତ୍ୟକର ଓଜନ ବସ୍ତୁଗତ ନୁହେଁ—ଭାବଗତ । ତେଣୁ କାହା ପାଖରେ ତାକୁ ମାପିବାଲାଗି ସର୍ବଗ୍ରାହ୍ୟ ଓଜନଯନ୍ତ୍ର ନାହିଁ । ଏଇ ସରଳ ସହଜ ସତ୍ୟଟିକୁ ଗ୍ରହଣ କରି ନିର୍ଲିପ୍ତଭାବେ ଲେଖି ଚାଲନ୍ତୁ ।

କିନ୍ତୁ ମୂଳରୁ ଭାବନ୍ତୁ ନାହିଁ ଯେ ଆପଣ ବ୍ୟାସ, ବାଲ୍ମୀକି, ସେକ୍ସପିୟର, ଗେଟେ ବା ରବୀନ୍ଦ୍ରନାଥଙ୍କ କଲା ନେଇ ଜନ୍ମ ପାଇଛନ୍ତି—ବା ସେଭଳି ହେବାକୁ ଆପଣ ବାଧ୍ୟ । ଛଅଗୁଣ୍ଠ ଆ ଗୃହୀଟିଏ ଭଳି ଆପଣ ଖଟିଚାଲନ୍ତୁ । କିଛି ହେଲେ ଭେଣ୍ଡି, ବାଇଗଣ, ଶିମ୍ବ, ପୋଇ, ଲାଉ ଫଳିବ ତ !! ଫଳିବଇ ଫଳିବ । ଏ ଦେଶରେ ଭେଣ୍ଡି ବାଇଗଣ ବା ମିଳୁଛି କାହିଁ ?

ଆମ ଭଳି ଲେଖକଙ୍କ ଜୀବନରେ ସୂର୍ଯ୍ୟ ଚନ୍ଦ୍ରଙ୍କ ସଙ୍ଗେ ସ୍ପର୍ଦ୍ଧା କରିବା ମୂଢ଼ତା । ସେମାନଙ୍କ ଭଳି ହେବାକୁ ଆକୁଳ ହୋଇ ପଡ଼ିବା ମଧ୍ୟ ଘୋର ମୂର୍ଖତା । ମୁଁ ବରଂ ଜୁଳୁଜୁଳା ପୋକଟିଏ ହୋଇ ଅନନ୍ତ ଅନ୍ଧକାରର ଅଧଇଞ୍ଚିଏ ପରିମାଣ ସ୍ଥାନକୁ ମୋର ସ୍ୱଳ୍ପାୟୁ ସ୍ୱଳ୍ପାଲୋକରେ ଆଲୋକିତ କରିପାରିଲେ ଜୀବନକୁ ଧନ୍ୟ ମନେ କରିବି । ବିସ୍ତୀର୍ଣ୍ଣ ଜ୍ୟୋତିରିଙ୍ଗଣଟିର ସୂର୍ଯ୍ୟସ୍ପର୍ଦ୍ଧା ଅତି ଦୟନୀୟ ! ମାତ୍ର ସ୍ପର୍ଦ୍ଧାହୀନ ଈର୍ଷାହୀନ, ଯଶୋବିରାଗୀ ଅଥଚ କର୍ମରତ ଜ୍ୟୋତିରିଙ୍ଗଣଟି ସୂର୍ଯ୍ୟଙ୍କଠାରୁ କୋଉ ଗୁଣରେ କମ୍ ? ଆରେ ବାବୁ ! କୋଟି କୋଟି ସୂର୍ଯ୍ୟ ମଧ୍ୟ ଏଇ ଅନନ୍ତ ଅନ୍ଧକାରକୁ ଦୂର କରିବାରେ ଅତି ଅକ୍ଷମ । ଅନନ୍ତ ଆକାଶରେ ଜଣେ ଜଣେ ସୂର୍ଯ୍ୟ ମଧ୍ୟ ସାମାନ୍ୟ ଖଦ୍ୟୋତଟିଏ ଭଳି ଅତି କ୍ଷୁଦ୍ର, ଅତି ନଗଣ୍ୟ । କାହିଁକି ତେବେ ବୃଥା ଏଇ ଆପେକ୍ଷିକ ହୀନମ୍ମନ୍ୟତା ?

**ପାଠକ ପାଠିକାଙ୍କ ପ୍ରତି :**

କାହାଠାରୁ କିଛି ଶୁଣି ଦେଇ ବା ଓଡ଼ିଆ ଲେଖାଟିଏ ଭିତରେ ହଠାତ୍ କିଛି ଗୋଟାଏ ଅଭିନବ ଚମତ୍କାରିତା ଦେଖି ଚମକିପଡ଼ି ଘୋର ସଂଶୟ ଓ ଅବିଶ୍ୱାସରେ ପଡ଼ି ଘାବରେଇ ଯିବା—କିମ୍ବା କୌଣସି ଭିନ୍ନଦେଶୀ ଉପନ୍ୟାସ ବା କବିତା ସହ ଘଟଣାଟିଏ ବା ଭାବଟିଏ ସମାନ ବୋଲି ଜଣାଯିବା ମାତ୍ରେ ତାକୁ 'ଚୋରି' ବୋଲି ଭାବି ନେଇ ଲେଖକକୁ ଘୃଣା କରି ବସିବା ପାଠକ ପକ୍ଷରେ ବିଶେଷ ଲାଭଜନକ ନୁହଁ. ଏବଂ ବିବେକତା ମଧ୍ୟ ନୁହେଁ । ଆପଣ ଅବଶ୍ୟ ସବୁ ଲେଖକର ଲେଖା ପଢ଼ିବାକୁ ବାଧ୍ୟ ନୁହନ୍ତି ଆଉ ପ୍ରତି ସତ୍‌ଲେଖକ ଜାଣେ—ତା' ପାଠକ ଗୋପରେ ବଢ଼ୁଛି । ଆଜ୍ଞା, ମନେରଖନ୍ତୁ—ଶ୍ରୀମତୀ ଗ୍ରେଟେର୍ଗା ଓ ମିସେସ୍ ରୋଜାଲିଣ୍ଡଙ୍କ ପରି ଆପଣଙ୍କ ସ୍ତ୍ରୀ ମଧ୍ୟ ସୁନ୍ଦରୀ ହୋଇ ପାରନ୍ତି ଏବଂ ସେ ସୌନ୍ଦର୍ଯ୍ୟରେ ବହୁ ସାମଞ୍ଜସ୍ୟ ଥିଲେ ବି—ତାହା ତାଙ୍କର ଈଶ୍ୱରଦତ୍ତ ମୌଳିକ ବିଭବ ହୋଇ ପାରେ । ଆପଣ ନିଜ ସ୍ତ୍ରୀଙ୍କୁ ସୁନ୍ଦରୀ ଦେଖି ହଠାତ୍ ସନ୍ଦେହ କରନ୍ତୁ ନାହିଁ ଯେ ତାଙ୍କ ସୌନ୍ଦର୍ଯ୍ୟ ଉପରେ ଶ୍ରୀମତୀ ଗ୍ରେଟେର୍ଗା ବା ମିସେସ୍ ରୋଜାଲିଣ୍ଡଙ୍କ ପ୍ରଭାବ ପଡ଼ିଛି ।



# ଲେଖକ ପ୍ରସ୍ତୁତ କି ?

୯୦

**ସମାଜ ପାଇଁ :**

ଗତ କେତେବର୍ଷ ମଧ୍ୟରେ ଆମ ଦେଶରେ ତଥା ପ୍ରଦେଶରେ ବହୁ ଘଟଣା ଓ ଦୁର୍ଘଟଣା ବିଭିନ୍ନ ସ୍ତରରେ ଘଟି ଗଲାଣି । କ୍ରମେ କ୍ରମେ ସମାଜର ଅନେକ ପୁରାତନ ଜଟିଳ ସମସ୍ୟା ଯାହାସବୁ ଲୁଚ ଛପି ରହିଥିଲା—ବା ଯେଉଁଗୁଡ଼ିକୁ ତାଳି ପକାଇ ରଖା ଯାଇଥିଲା । ସେଗୁଡ଼ିକ ଆଜି ସ୍ପଷ୍ଟଭାବେ ଆମ ସମ୍ମୁଖକୁ ଆସି ଯାଉଛନ୍ତି ଓ ଆମ୍ଭମାନଙ୍କୁ ସମ୍ମୁଖୀନ ହେବାଲାଗି ଆହ୍ୱାନ ଜଣାଉଛନ୍ତି । ତା' ସଙ୍ଗେ ସଙ୍ଗେ ଆହୁରି ଅନେକ ସମସ୍ୟା ନୂତନଭାବେ ମଧ୍ୟ ଦେଖା ଦେଇଛନ୍ତି । ଏହା ଫଳରେ ଚତୁର୍ଦ୍ଦିଗରେ ଏକ ଆନ୍ଦୋଳନ, ବିଶୃଙ୍ଖଳା ଓ ଅସ୍ଥିରତା ଦେଖା ଦେଇଛି । ଯୁବଚେତନାରେ ଏ ଏ ସବୁ ଚିନ୍ତାହୀନ ଅବୋଧ ଉତ୍କ୍ଷିପ୍ତତା ଓ କ୍ରୋଧରୂପରେ—ପ୍ରୌଢ଼ ଚେତନାରେ ଏଗୁଡ଼ିକ ନିର୍ବାପରିପ୍ରତ୍ୟାସୀ ବୁଦ୍ଧି ଭେଦ ଓ ଚିନ୍ତା ସଙ୍କଟରୂପରେ ପ୍ରକଟିତ ହେଉଅଛି । ଏହି ସମୟରେ ଆମର ଚିନ୍ତାଶୀଳ ସଂସ୍କୃତି-ସଚେତନ ସାହିତ୍ୟିକବୃନ୍ଦ କେବଳ ଆପଣାର ଅହଂକେନ୍ଦ୍ରିକ ଲିପିବିଳାସ ଭାବବିଳାସ ବା ଚିନ୍ତାବିଳାସରେ ନିମଜ୍ଜିତ ହୋଇ ଜୀବନ ବା ସମାଜର ବାସ୍ତବ ରୂପ ଦେଖିବାକୁ ପ୍ରସ୍ତୁତ ନ ହେଲେ ବା ଅନ୍ୟ ଅର୍ଥରେ ଜୀବନ ଓ ସମାଜର ସଙ୍ଗେ ମୁହାଁମୁହିଁ ହୋଇ ତା'ର ଦାୟିତ୍ୱ ପ୍ରତ୍ୟକ୍ଷଭାବେ ନିଜ ଉପରକୁ ନେବାଲାଗି ଅକପଟ ଅକୃପଣ ଓ ମମତାପୂର୍ଣ୍ଣ ବ୍ୟଗ୍ରତା ନ ଦେଖାଇଲେ —ଦେଶରେ ଘୋର ଅନ୍ଧବପର୍ଯ୍ୟସ୍ତ ଅକାରଣ ଘଟିଯିବ । ଏକଥା ନିଃସନ୍ଦେହ ଯେ ଆମ ଦେଶରେ ଏକ ଭୟଙ୍କର ରାଜନୀତିକ ଅସ୍ଥିରତା ଦେଖା ଦେଇଛି । ଏବଂ ତା'ର ଫଳସ୍ୱରୂପ ଆମର ଆର୍ଥନୀତିକ ସମସ୍ୟା ମଧ୍ୟ ଏକ ଅସହ୍ୟ ଅନିଶ୍ଚିତ ବର୍ତ୍ତମାନରୁ ଏକ ଅକଳ୍ପନୀୟ ଭବିଷ୍ୟତ, ଆଡ଼କୁ ଅନ୍ଧଭାବେ ମୁହାଁଇ ଯାଉଛି । ଏ ଦୁଇଟିର ସମାଧାନ ହୋଇ ନ ପାରିବାରୁ ଦେଶର ସବୁଠି ଗୋଟାଏ କିଂଭୂତ ପରିସ୍ଥିତିର ଉଦ୍‌ଭବ ହୋଇ

ଯାଇଛି । ଏଣେ ଦେଶରେ ଶିକ୍ଷିତସଂଖ୍ୟା ବୃଦ୍ଧି ପାଇଛି ସିନା—ତଦନୁପାତରେ ଶିକ୍ଷିତ ଜନସମାଜର ରୁଚି, ମୂଲ୍ୟବୋଧ, ଆଦର୍ଶ ଓ ସ୍ୱପ୍ନ-ଆଦିର ମାନ ଆଶାନୁରୂପ ବୃଦ୍ଧି ପାଇ ନାହିଁ । ଯାହା ଦେଖା ଯାଉଛି— ଆମର ପ୍ରୌଢ଼ମାନଙ୍କର ସ୍ୱପ୍ନଭଙ୍ଗ ହୋଇଛି ଏବଂ ଯୁବକମାନଙ୍କ ମନରେ ନୂତନ ସ୍ୱପ୍ନ କଛି ନାହିଁ । ଏକ ପ୍ରମତ୍ତ ସ୍ୱାଧିକାର-ଭୋଗାକାଙ୍କ୍ଷା ବ୍ୟତୀତ ନବଯୁବକର ଆଉ କଛି ଆଦର୍ଶ ଆମେ ଦେଖି ପାରୁନାହୁଁ । ଫଳରେ ବ୍ୟକ୍ତି ଓ ସମାଜଚେତନାରେ କ'ଣ ଗୋଟାଏ ଓଲଟପାଲଟ ହୋଇଗଲା ଭଳି ଲାଗୁଛି । ସମାଜର ଅଧିକାଂଶ ବ୍ୟକ୍ତି ଏସବୁ ସମସ୍ୟାରେ କିଂକର୍ତ୍ତବ୍ୟ ବିମୂଢ଼ । ରାଷ୍ଟ୍ରଭାଷା, ପ୍ରାଦେଶିକତା ଶିକ୍ଷାର ମାଧ୍ୟମ, ଜମିଜମା-ସମସ୍ୟା, ଗ୍ରାମ-ଶିଳ୍ପର ପ୍ରସାର, ଜାତୀୟକରଣ-ଅବାଧ ଅର୍ଥନୀତିକ ପ୍ରତିଯୋଗିତା, ନିଶା-ନିବାରଣ, ସାମ୍ୟବାଦ, ସମାଜବାଦ, ଗଣତନ୍ତ୍ର, କୃଷିଭିତ୍ତିକ ଅର୍ଥନୀତି ଧର୍ମ ବା ଧର୍ମନିରପେକ୍ଷତା ଆଦି ସମସ୍ୟାଗୁଡ଼ିକ ବର୍ତ୍ତମାନ ସିଧା ଜନସାଧାରଣଙ୍କ ଆଗରେ ପହୁଞ୍ଚି ଯାଇଛନ୍ତି । ସତ୍ୟର ବୃହତ୍ତମ ଦିଗକୁ ଦୃଷ୍ଟି ନ ଦେଇ ରାଜନୀତି-ବ୍ୟବସାୟୀମାନେ ସେମାନଙ୍କର ଦଳ ଓ ବ୍ୟକ୍ତିଗତ ସ୍ୱାର୍ଥଦୃଷ୍ଟିରୁ ସବୁ ସମସ୍ୟାରେ ହସ୍ତକ୍ଷେପ ଓ ହସ୍ତପ୍ରୟୋଗ କରି ପରିସ୍ଥିତିକୁ ଆହୁରି ଜଟିଳ ଓ ଭୟାବହ କରି ଦେଲେଣି, ଏଣେ ଜନସାଧାରଣ ହଠାତ୍ ଏ ସମ୍ବନ୍ଧେ କଛି ଚିନ୍ତା କରି ପାରୁ ନାହାନ୍ତି କି ସିଦ୍ଧାନ୍ତ ନେଇ ପାରୁ ନାହାନ୍ତି । ଏ ଦେଶରେ ପ୍ରତିକ୍ରିୟାଶୀଳ ପୁଞ୍ଜିପତି ଓ ବୁର୍ଜୁୟାମାନଙ୍କର ଚକ୍ରାନ୍ତ ବିରୁଦ୍ଧରେ ସର୍ବହରାମାନଙ୍କର ସମୂହ ସତ୍ୟାଗ୍ରହୀ ଆଦର୍ଶନିଷ୍ଠ ସଙ୍ଗଠିତ ବିପ୍ଳବ ପରିବର୍ତ୍ତେ—ଏକ କର୍ତ୍ତବ୍ୟ ବିମୁଖ ବ୍ୟକ୍ତିଗତ ବା ସଂକୀର୍ଣ୍ଣ ଏକ ଗୋଷ୍ଠୀଗତ ଭୋଗା-ଧିକାରବାଦର ପ୍ରତିଷ୍ଠା ଲାଗି କାଁ ଭାଁ ବିଶୃଙ୍ଖଳ ବିଦ୍ରୋହ ବର୍ତ୍ତମାନ ଆମ ଦେଶର ତଥାକଥିତ ସାମାଜିକ ବା ଅର୍ଥନୀତିକ ବିପ୍ଳବର ଭୂମିକା ହୋଇପଡ଼ିଛି । ଏ ବଡ ଘାତକ ପରିସ୍ଥିତି ।

ଏହି ପରିସ୍ଥିତିରେ ପାଶ୍ଚାତ୍ୟ ଜଗତର କବି ଓ ଲେଖକମାନେ ମୁକ୍ତ ଚିତ୍ତରେ ନିର୍ଭୀକଭାବେ ସଙ୍କଟମୋଚନର ଗୁରୁଦାୟିତ୍ୱ ବରଣ କରି ନାନାବିଧ ନିଗ୍ରହର ଶିକାର ହୋଇଛନ୍ତି । ସମାଜରେ ଏକ ବିଶେଷ ରାଜନୀତିକ ବା ଅର୍ଥନୀତିକ ଆଦର୍ଶବାଦର ପ୍ରତିଷ୍ଠାଲାଗି ଏମାନଙ୍କର ସାଧନା ବାଙ୍ମୟ କର୍ମରେ ଯେମିତି ପ୍ରକାଶ୍ୟ—ତନ୍ନିମିତ୍ତ ଯନ୍ତ୍ରଣାରେ ତଦ୍ରୂପ ମୁଖର ।

## ଜୀବନ ପାଇଁ :

ଦେଶର ଏଇସବୁ ପ୍ରଚଳିତ ସମସ୍ୟା ବ୍ୟତୀତ – ସମଗ୍ର ମନୁଷ୍ୟସମାଜ ଆଗରେ ମଧ୍ୟ ଆଜି ଦେଖା ଦେଇଛି କେତେକ ମୌଳିକ ସମସ୍ୟା । ଯଥା – ଜାତୀୟତା ନା ଆନ୍ତର୍ଜାତୀୟତା—ଧର୍ମ ନା ଆଧ୍ୟାତ୍ମବାଦ—ଯୁଦ୍ଧ ନା ଶାନ୍ତି—ପ୍ରତିଯୋଗିତା ନା

ସହଯୋଗିତା – ଅହଂବାଦ ନା ଈଶ୍ୱରବାଦ—ଭୟଭକ୍ତି ନା ପ୍ରେମ ଭକ୍ତି—ସ୍ୱାଧୀନ ଇଚ୍ଛା ନା ନିୟନ୍ତ୍ରିତ ଇଚ୍ଛା – ବ୍ୟକ୍ତିବାଦ ନା ସମାଜବାଦ ଏବଂ ଏହିଭଳି ବହୁ ସମସ୍ୟା ସହିତ ସବୁଠାରୁ ବିରାଟ ଓ ମୁଖ୍ୟ ସମସ୍ୟା ହେଲ – ମନୁଷ୍ୟ କ୍ରମବିକାଶ ହୋଇ ଚାଲିବ – ନା ଏଇଠି ଶେଷ ହୋଇଯିବ ? କିମ୍ବା କିଛି ଅଂଶ ପାଶବିକତା ଓ କିଛି ଅଂଶ ବିଶ୍ୱରବୃଦ୍ଧି – ଏହି ଦୁଇଟିର ଚକ୍ରାବର୍ତ୍ତନରେ ବ୍ୟକ୍ତି ବା ସମାଜ ବାରମ୍ବାର ଆବର୍ତ୍ତିତ ହେଉଥିବ – ନା ଏଥିରୁ ମୁକ୍ତି ପାଇବାର କିଛି ବାଟ ଅଛି ? ପ୍ରବୃତ୍ତିଗୁଡ଼ିକ ହାତରେ ମଣିଷ ଏକ ଯନ୍ତ୍ର କି ? ବୁଦ୍ଧି ନା ବିଶ୍ୱରବୁଦ୍ଧିରୁ ଉଦ୍‌ଭୂତ ବିଜ୍ଞାନ, ନୀତି, ଶିଳ୍ପ କଳା ଓ ଧର୍ମ ଆଦି ମଣିଷକୁ ନିୟନ୍ତ୍ରିତ କରିବ – ନା ଏହାଠାରୁ ଆଉ କିଛି ମହତ୍ତର ସତ୍ୟ ଅଛି—ଯାହାକୁ ଆୟତ୍ତ କରି କରି ଓ ଯାହାଦ୍ୱାରା ଆୟତ୍ତ ହୋଇ ମଣିଷ ଏକ ମୁକ୍ତ ଜୀବରେ ପରିଣତ ହୋଇ ନିଜେ ନିଜର ଭାଗ୍ୟକୁ ଗଢ଼ି ପାରିବ ? ଆଜି ପର୍ଯ୍ୟନ୍ତ ମଣିଷ ଯାହାସବୁ ଅର୍ଜନ କରିଛି—ସେତିକି ତା'ର ସୁଖ-ଶାନ୍ତିପାଇଁ ଯଥେଷ୍ଟ ନା ଆଉ କିଛି ତା'ର ଅର୍ଜନ କରିବାକୁ ବାକି ଅଛି ।

ମଣିଷ ଜନ୍ମ ଓ ମୃତ୍ୟୁ ହାତରେ ଏକ ଅସହାୟ ପୁତ୍ତଳିକା ନା' ତାର କିଛି ସ୍ୱାତନ୍ତ୍ର୍ୟ ରହିଛି – କି ସେତିକି ତାକୁ ଅର୍ଜନ କରିବାକୁ ହେବ—ଏବଂ କିପରି କେଉଁବାଟେ ସେତିକି ସେ ଅର୍ଜନ କରିବ ? କେବଳ ଅନୁଭୂତି ଓ ଚିନ୍ତା ତା'ର ଶୈଳ୍ପିକ ଏବଂ ବୌଦ୍ଧିକ ବିକାଶର ପରିପୂର୍ଣ୍ଣତା ଆଣିଦେବ—ନା ତାକୁ ଅପେକ୍ଷା କରିବାକୁ ହେବ – ସାଧନା କରିବାକୁ ହେବ ଆହୁରି ଗଭୀରତର ଏବଂ ମହତ୍ତର କିଛି ଉପଲବ୍‌ଧିଗତ ସତ୍ୟପାଇଁ ?

ଏଗୁଡ଼ିକ ପ୍ରଶ୍ନ – ଏବଂ ଏଗୁଡ଼ିକ ହିଁ ବର୍ତ୍ତମାନର ସାହିତ୍ୟିକ ଆଗରେ ପ୍ରଧାନତମ ସମସ୍ୟା । ସମାଜ ଜୀବନର ଏହି ସମସ୍ୟା ସମାଧାନର ଦାୟିତ୍ୱକୁ ସାହିତ୍ୟିକ ସ୍ୱେଚ୍ଛାରେ ସାହସର ସହିତ ବରଣ କରିନେବା ଉଚିତ । ପାଶ୍ଚାତ୍ୟ ଜଗତରେ "ସ୍ଥିତିବାଦ" ଓ "ପ୍ରବାସୀବାଦ" "ଜୀବନୀ ଶକ୍ତିବାଦ" ଆଦି ସାହିତ୍ୟିକ ଦର୍ଶନର ପ୍ରତିଷ୍ଠାତାମାନେ ଜୀବନର ଏହି ଜ୍ୱଳନ୍ତ ଓ ଦହ୍ୟମାନ ସମସ୍ୟାଗୁଡ଼ିକର ସମ୍ମୁଖୀନ ହୋଇ ବହୁ ଦାହ ଓ ବହୁତାପ ଅନୁଭୋଗ କରିଛନ୍ତି ଏବଂ ଆମ ଦେଶର ମୁନି-କବି ଓ ଦାର୍ଶନିକମାନେ ମଧ୍ୟ ଏହି ଉତ୍ତପ୍ତ ସଙ୍କଟକୁ ସମାଧାନ କରିବାରେ ବହୁ କଷ୍ଟ ଭୋଗ କରିଛନ୍ତି । ଯଦିଓ ସେମାନଙ୍କର ଜୀବନ-ସାଧନା ଓ ଜ୍ୱାଳା-ଯନ୍ତ୍ରଣା ଅତି ନୀରବ ଓ ଅତି ନିଭୃତ ।

ମୋଟ ଉପରେ ସମାଜର ଓ ଜୀବନର ଦାୟିତ୍ୱ ବର୍ତ୍ତମାନ ଆମମାନଙ୍କ ଆଗରେ ଉପସ୍ଥିତ । ଆମେ ଏଥିପାଇଁ ପ୍ରସ୍ତୁତ କି ? କାରଣ ଏହା ପରୋକ୍ଷରେ ଓ

ପ୍ରତ୍ୟକ୍ଷରେ ଏକ ମହାସଂଗ୍ରାମ ପଶୁ ସଙ୍ଗେ ପାଶବିକତା ସଙ୍ଗେ । ନିଜର ବ୍ୟକ୍ତିଗତ ସୁଖ ସୁବିଧା, ହାନିଲାଭ ଓ ନିଜ୍ୱପଣର ଦାବୀଗୁଡ଼ିକୁ ବିସର୍ଜନ କରିଦେବାର ସାଧନା ନ କଲେ—ଆମର ଏହି ପ୍ରସ୍ତୁତିପାଇଁ ଯୋଗ୍ୟତା ଆସିବ ନାହିଁ ।

## ବିଦ୍ରୋହୀ ସାହିତ୍ୟିକ :

ସବୁ ସାହିତ୍ୟିକମାନଙ୍କୁ ମୋଟାମୋଟି ଦୁଇ ଭାଗରେ ବିଭକ୍ତ କରାଯାଇ-ପାରେ । ସମାଜ-ସଚେତନ ଓ ଜୀବନ-ସଚେତନ ବା ସମାଜନିଷ୍ଠ ଓ ଜୀବନନିଷ୍ଠ । ଜୀବନନିଷ୍ଠତା ଭିତରେ ଅବଶ୍ୟ ସମାଜବୋଧ ଓ ସମାଜ ପ୍ରତି ଦାୟିତ୍ୱ ଓ କର୍ତ୍ତବ୍ୟାଦି ଆସିପିବ, ମାତ୍ର ସୂକ୍ଷ୍ମତଃ ଦେଖିଲେ—ଦୁଇଟି ଭିତରେ ଏକ ଅସ୍ପଷ୍ଟ ପାର୍ଥକ୍ୟ ରହିଛି । ସମାଜ-ନିଷ୍ଠ ସାହିତ୍ୟିକର ଚେତନା କେବଳ ବର୍ତ୍ତମାନର ସମାଜକୁ କେନ୍ଦ୍ର କରି ପ୍ରସ୍ତୁତ ହୁଏ । ଏଇ ସମାଜର ସୁଖ-ଦୁଃଖ, ଗଠନ-ସଙ୍ଗଠନ ତା'ର ଅଭିବୃଦ୍ଧି ସ୍ପୃହଦା ପୂରଣ ଆଦି ଉପରେ ସମାଜନିଷ୍ଠ ଲେଖକ ନିଜ ଚେତନାକୁ ଠୂଳ କରେ । ଏ କ୍ଷେତ୍ରରେ ସେ ସମାଜସଙ୍ଗେ ଜଡ଼ିତ ହୋଇଯାଏ—ତା'ର ସ୍ପଷ୍ଟ ବାସ୍ତବତାକୁ ବୁଝିନିଏ ଓ ଅସ୍ପଷ୍ଟ ସମସ୍ୟାଗୁଡ଼ିକୁ ଉଦ୍ଧାର କରି ତା'ର ସମାଧାନ ଖୋଜେ । ପ୍ରଚଳିତ ଶୋଷଣ, ଲୁଣ୍ଠନ, ଅବିଗ୍ଭର ଓ ବିଶୃଙ୍ଖଳା ବିରୁଦ୍ଧରେ ସେ ବିଦ୍ରୋହୀ । ତା'ର ସାହିତ୍ୟ-ପ୍ରେରଣା ଯଦିଓ ସୃଜନାତ୍ମକ-ଗଠନମୂଳକ—ଲେଖନୀ କିନ୍ତୁ ତା'ର ଖଡ୍‌ଗବତ୍ ଶାଣିତ, ବର୍ଚ୍ଛାବତ୍ ତୀକ୍ଷ୍ଣ । ତା'ର ବାଣୀ ବିପ୍ଳବାତ୍ମକ—ଉତ୍ତପ୍ତ-ରାଗ-ରସ-ରଞ୍ଜିତ ଓ ତା'ର ଛନ୍ଦ ତାଣ୍ଡବ ।

ଅପରପକ୍ଷରେ ଜୀବନନିଷ୍ଠ ସାହିତ୍ୟିକ ବର୍ତ୍ତମାନର ସମସ୍ୟା ଉପରେ ଉଦାସୀନ ନ ହେଲେ ବି ତଦୈକନିଷ୍ଠ ନୁହଁ । କୌଣସି ନିର୍ଦ୍ଦିଷ୍ଟ ବା ସୀମିତ ଦେଶକାଳର ଏକ ନିର୍ଦ୍ଦିଷ୍ଟ ସମାଧାନ-ନିର୍ଭର ସଂସ୍ଥାମୂଳକ ଜୀବନର ପ୍ରତିଷ୍ଠା ତା'ର ଲକ୍ଷ୍ୟ ନୁହେଁ । ତା'ର ଚେତନାରେ ଜୀବନ ଏକ "ସମଗ୍ରତା" ନିରାକାରଭାବ ନେଇ ଠିଆ ହୁଏ । ସେ ଜୀବନକୁ ଦେଖେ ଏକ ନୈର୍ବ୍ୟକ୍ତିକ ଦୃଷ୍ଟିରେ ଦେଶକାଳରୁ ବିଚ୍ଛିନ୍ନ କରି । କୌଣସି ଆଶୁ ସମାଧାନ ଉପରେ ତା'ର ପୂର୍ଣ୍ଣ ବିଶ୍ୱାସ ନାହିଁ । କାଳ-ଚେତନାରେ ତା'ର ଲକ୍ଷ୍ୟ ଭବିଷ୍ୟତ୍-ଦେଶ-ଚେତନାରେ ତାର ଲକ୍ଷ୍ୟ ମହାକାଶ । ପାତ୍ର-ଚେତନାରେ ତା'ଆଗରେ କେବଳ ଜୀବନ—ଜୀବନ—ଜୀବନ । ସେ ସେହି ନିରାକାର ଅଲକ୍‌ଲକ୍ଷ୍ୟହୀନ ଜୀବନପ୍ରବାହ ମଧ୍ୟରେ ଝାମ୍ପ ଦିଏ । ଜୀବନର ମୌଳିକ ଉପା-ଦାନଗୁଡ଼ିକ ସଙ୍ଗେ ତାର କାରବାର, ଜୀବନର ମୌଳିକ ସମସ୍ୟାମାନ—ତାର ବିପଦ ଆପଦ—ତାର ସୀମିତତା ଓ ସମ୍ଭାବନାମାନ ତାର ସୁଦୂର ଲକ୍ଷ୍ୟ ଓ ତା'ର ସାଧ୍ୟ ସାଧନ ଆଦି ସଙ୍ଗେ ଜୀବନନିଷ୍ଠ ସାହିତ୍ୟିକର କାରବାର । ଏଠି ମଧ୍ୟ ସମଗ୍ରଭାବେ

ଜୀବନର ଦାୟିତ୍ୱ ସେ ଏକା ଏକା ନିଜ ଉପରକୁ ନେଇଯାଏ ଏବଂ ବିଶ୍ୱ-ଜୀବନ-ଧାରା ସଙ୍ଗେ ନିଜର ଯୋଗସୂତ୍ର ସ୍ଥାପନକରି ନିଜ ଉପରେ ତା'ର ସମସ୍ତ ପରୀକ୍ଷା ନିରୀକ୍ଷା ଚଳାଇ ବସେ । ଏହି ଜୀବନର ସମସ୍ତ ଅସହାୟତା, ସ୍ଥୂଳତା, ପାଶବତା ସ୍ଥିତି-ଶୀଳତା, ରୁକ୍ଷତା ଓ ସଙ୍କୋଚ ଆଦି ପ୍ରତି ତାର ଗଭୀରଆକ୍ରୋଶ—ସୁତୀବ୍ର ବିଦ୍ରୋହ । ସେ ପ୍ରତିଷ୍ଠା କରିବାକୁ ଚାହେଁ ଜୀବନରେ ପ୍ରେମ, ସମତା, ସାମଞ୍ଜସ୍ୟ, ସୌନ୍ଦର୍ଯ୍ୟ ଓ ଅମୃତତ୍ୱ । ଏଗୁଡ଼ିକର ବିରୁଦ୍ଧ ଶକ୍ତିମାନଙ୍କ ବିରୁଦ୍ଧରେ ତାର ବାଣୀ ଦୀପ୍ତ, ଗମ୍ଭୀର, ଦ୍ୟୋତନାମୟ, ଉଦ୍‌ବୋଧନାପୂର୍ଣ୍ଣ, ରାଗରଞ୍ଜିତ, ରସମଧୁର ଏବଂ ବୈଚିତ୍ର୍ୟ-ପୂର୍ଣ୍ଣ ଅନନ୍ତଃ ନିସ୍ୟନ୍ଦିନୀ । ଏ ଦୃଷ୍ଟିରୁ ଜୀବନନିଷ୍ଠ ସାହିତ୍ୟିକ ମଧ୍ୟ ମହାନ ବିପ୍ଳବୀ ।

ଆଜି ଆମେ ଆସନ୍ତୁ ନିଜକୁ ପଚାରିବା—ଆମ ସାହିତ୍ୟିକ-ଚେତନାର ଅସଲ ସ୍ୱରୂପ କ'ଣ—ଆମ ସୃଷ୍ଟି ପ୍ରେରଣାର ମୂଳ ଉତ୍ସ କ'ଣ—ଆମର ଲକ୍ଷ୍ୟ କ'ଣ— । ଦେଶକାଳ ପାତ୍ରରେ ବର୍ଦ୍ଧିତ ଏକ ସମାଜ ପ୍ରତି ଆମର ଦାୟିତ୍ୱ ଅଛି—ନା ଦେଶ-କାଳ ପାତ୍ର ସୀମାପରିଚ୍ଛିନ୍ନ ସମଗ୍ର ଜୀବନକୁ ଆମେ ସମ୍ମୁଖୀନ ହେବାକୁ ଚାହୁଁଛୁ ?

ପରିଚ୍ଛନ୍ନ ଭାବେ, ଦ୍ୱିଧାହୀନଭାବେ ଅକପଟ ଚିତ୍ତରେ ନିଜକୁ ଏତିକି ପ୍ରଶ୍ନ କରିପାରିଲେ—ଆମର ସାହିତ୍ୟିକ ଜୀବନର ଯଥାର୍ଥ ସ୍ୱରୂପ ପ୍ରକଟିତ ହୋଇଯିବ ଏବଂ ତା'ପରେ ଯାଇ ଆମ ଲିଖିତ ସାହିତ୍ୟଦ୍ୱାରା ସମାଜ ଓ ଜୀବନ ଉଭୟେ ପ୍ରଭାବିତ ହୋଇ ପାରିବେ ।



# ଏକ ଅଭିଭାଷଣ

**ସଜ୍ଜନ ବୃନ୍ଦ !**

ମୋର ସମ୍ମୁଖରେ ଉପବିଷ୍ଟ ଉତ୍କଳର ବରେଣ୍ୟ ପ୍ରବୀଣ ଓ ନବୀନ ସାହିତ୍ୟିକ, ଶିଳ୍ପୀଗଣ ଓ ଚଳଚ୍ଚିତ୍ରନାଟ୍ୟକାରମାନଙ୍କୁ ଅଭିନନ୍ଦନ କରିବାକୁ ଯାଇ, ଜଣେ ସାହିତ୍ୟିକଭାବେ ଓ ଗୋଟିଏ ପତ୍ରିକାର ପରିଚାଳନା ସମ୍ପାଦକଭାବେ ମୁଁ ମୋର ଅନ୍ତରର ଭାବ ଆପଣମାନଙ୍କ ଆଗରେ ନିବେଦନ କରୁଅଛି । ଏହି ଦଶବର୍ଷ ମଧ୍ୟରେ ଓଡ଼ିଶାର ସାହିତ୍ୟ କ୍ଷେତ୍ରରେ ପରିମାଣଗତ ନ ହେଲେ ବି, ସ୍ୱଭାବଗତ ବହୁ ଆନ୍ଦୋଳନ ଆରମ୍ଭ ହୋଇଯାଇଛି । କବିତା, ଗଳ୍ପ ଓ ନାଟକ କ୍ଷେତ୍ରରେ ପରମ୍ପରାକୁ ଭାଙ୍ଗି ନାନା ନୂତନ ପରୀକ୍ଷା ଓ ପ୍ରୟୋଗର ସୂତ୍ରପାତ ହୋଇ ଚାଲିଛି । ଯଦିଓ ଏସବୁ ସତ୍ତ୍ୱେ କୌଣସି ବିଶେଷ ଧାରା ବା ଦୃଷ୍ଟିକୋଣର ଆଦର୍ଶରୂପ ପ୍ରତିଷ୍ଠା ହୋଇ ପାରିନାହିଁ । ଏହା ନ ହୋଇ ପାରିବାର ବହୁବିଧ କାରଣ ରହିଛି । ଅସଲ କାରଣଟି ହେଲା—ଆମେ ଯାହାସବୁ ଲେଖିଛୁ, ଜନସାଧାରଣଙ୍କ ଉପରେ ତା'ର କୌଣସି ସୃଜନାତ୍ମକ ପ୍ରଭାବ ପଡ଼ି ପାରୁନାହିଁ । ଏବେ ମଧ୍ୟ କଟକ ବା ଭୁବନେଶ୍ୱରରେ ଆୟୋଜିତ ସାହିତ୍ୟ ସଭାରେ ନୃତ୍ୟ ଗୀତର ବନ୍ଦୋବସ୍ତ ନ ଥିଲେ ଜନସାଧାରଣଙ୍କ ସମାବେଶ ଅତି ଦୟନୀୟ ଭାବେ କ୍ଷୀଣ ହୋଇଥାଏ । ଅଥଚ ରାମଚରିତ ମାନସ ପାରାୟଣରେ ବା କୌଣସି ଧର୍ମ ସଭାରେ ହଜାର ହଜାର ଶ୍ରୋତା ଏକନିଷ୍ଠ ଭାବେ ଘଣ୍ଟା ଘଣ୍ଟା ଧରି ଶୁଣୁଥିବାର ଲକ୍ଷ୍ୟ କରାଯାଇଛି । ଏଥିଲାଗି ଜନସାଧାରଣଙ୍କୁ ଦାୟୀ କରିବା ପୂର୍ବରୁ ଆମର କଠିନ ଆତ୍ମ ପରୀକ୍ଷଣ ଆବଶ୍ୟକ ଏବଂ ଆମର ସ୍ୱୀକୃତି ଉପରେ ମୂଲ୍ୟାଙ୍କନ ଆବଶ୍ୟକ । ଆମର ଗଳ୍ପ ଓ କବିତାମାନ ଆମ ଦୃଷ୍ଟିରେ ଯେତେ ତାତ୍ତ୍ୱିକ ବା ବାସ୍ତବ ଧର୍ମୀ ହେଉ ପଛେ—ଜନସାଧାରଣ ସେଥିରୁ ସେମାନଙ୍କର ଜୀବନ ସମସ୍ୟାର କୌଣସି ଚିତ୍ର ବା ତା'ର ସମାଧାନର କୌଣସି ଆଦର୍ଶ ଯେ ପାଉ ନାହାନ୍ତି—ଏହାକୁ ଅସ୍ୱୀକାର କରିବା ଅର୍ଥ ବାଗ୍‌ଦେବୀଙ୍କୁ ଆଖିମିଟିକା ମାରିବା ।

ଦେଖୁ ଏ ସବୁର ହେତୁ ଓ ତାର ନିରାକରଣର ଉପାୟମାନ ଆମକୁ ଖୋଜି ବାହାର କରିବାକୁ ହେବ ।

**ସୁଧୀବୃନ୍ଦ !**

ମଣିଷ ଆଜି ମହାକାଶମୁଖୀ—ଓ ତା'ର ଚେତନା ବର୍ତ୍ତମାନ ବିଶ୍ୱବଳୟରେ ବିସ୍ତାରିତ ହେବାକୁ ଯାଉଛି; କିନ୍ତୁ ତା'ର ଏହି କ୍ଷୁଦ୍ର ପୃଥିବୀଟିରେ ସାଧାରଣ ମଣିଷଟି ବିଚାରି ଆଜି ଖୁବ୍ ନିଃସଙ୍ଗ ହୋଇପଡ଼ିଛି । ଖୁବ୍ ଏକାକୀ ହୋଇ ପଡ଼ିଛି । ତା'ର ସର୍ବଦା ଆଶଙ୍କା—ସେ ଏ ପୃଥିବୀରେ ଜଣେ ଅବହେଳିତ ଅପରିଚିତ ବିଦେଶୀ । ତା'ର ଏଠାରେ କାହା ସଙ୍ଗେ ସମ୍ପର୍କ ନାହିଁ । ସମ୍ପର୍କ ନାହିଁ ତାର ଏଠାରେ ଚନ୍ଦ୍ରସୂର୍ଯ୍ୟଙ୍କ ସଙ୍ଗେ—ଗଛଲତା ସଙ୍ଗେ—ପଶୁପକ୍ଷୀଙ୍କ ସଙ୍ଗେ—ଏପରିକି ଆପଣାର ପରିବାର ଓ ଗୋଷ୍ଠୀ-ମଣିଷଙ୍କ ସଙ୍ଗେ । ଅତି କରୁଣ ଭାବେ ସେ ତା'ର ମାନବିକ ଆବେଦନଗୁଡ଼ିକୁ ହରାଇ ବସିଛି ।

ଅଥଚ ଏଣେ ଗୋଟିଏ ପଟେ ମଣିଷର ଅସ୍ପୃହା ଓ ସାଧନା ଚାଲିଛି ସମଗ୍ର ବିଶ୍ୱକୁ ଏକ ପରିବାରରେ ପରିଣତ କରିବା ଲାଗି ଏବଂ ଅନ୍ୟ ପଟେ ଚାଲିଛି ପୁଣି ବିଶ୍ୱକୁ ଭାଙ୍ଗି ଖଣ୍ଡ ଖଣ୍ଡ କରି ତାକୁ ସର୍ବନିମ୍ନ ବ୍ୟକ୍ତି ବା ଗୋଷ୍ଠୀ ସ୍ତରକୁ ଟାଣିଆଣିବା ଲାଗି ବିଭିନ୍ନ ସ୍ତରରେ ନିତି ନୂଆ ନୂଆ ଫନ୍ଦି ଫିକର । ଗୋଟିଏ ପଟେ ଚାଲିଛି—ମଣିଷକୁ ତା'ର ଅନ୍ତର୍ନିହିତ ଦୈବଗୁଣଗୁଡ଼ିକୁ ଚିହ୍ନାଇ ଦେବାର ଏବଂ ସେ ସମ୍ବନ୍ଧେ ସଚେତନ କରାଇ ଦେବାର ପ୍ରୟାସ । ଅନ୍ୟ ପଟେ ତାକୁ ବାରମ୍ବାର କୁହାଯାଉଛି—ତୁ କେବଳ ପଶୁ, କାମ କ୍ରୋଧ ଲୋଭ ମୋହାଦି ପ୍ରବୃତ୍ତିର ଓ ନିମ୍ନ ପ୍ରକୃତିର ତୁ ଗୋଟାଏ କ୍ରୀତଦାସ । ପୁଣି ଅନ୍ୟ କାନରେ ବାଜୁଛି—ତୁ ମୁକ୍ତ ସ୍ୱାଧୀନଈଶ୍ୱରନପାଦ । ଗୋଟିଏ କାନରେ ସେ ଶୁଣୁଛି ସେ ଏହି ବିରାଟ ବିଶ୍ୱବ୍ରହ୍ମାଣ୍ଡରୁ ବିଚ୍ଛିନ୍ନ ଗୋଟାଏ ହତଭାଗ୍ୟ ଅସହାୟ ଉଲ୍‌କା—ତା'ର ଜନ୍ମ ବା ଧ୍ୱଂସରେ ବିଶ୍ୱବ୍ରହ୍ମାଣ୍ଡର କିଛି ଯାଏ ଆସେ ନାହିଁ । ପୁଣି ଆର କାନରେ ସେ ଶୁଣୁଛି ଯେ ସେ ଅବିନାଶୀ—ଆଉ ଏହି ବିରାଟ ବିଶ୍ୱବ୍ରହ୍ମାଣ୍ଡର ସେ ଗୋଟାଏ ନିତ୍ୟ ବିକାଶଶୀଳ ଅବିଚ୍ଛିନ୍ନ ଅଂଶ । ମୋଟା ମୋଟି ଆମର ସଭ୍ୟତା ଓ ସମାଜ ମଧ୍ୟ ଏହିଭଳି ଏକ ଦୋଛକିରେ ଆସି ପହଞ୍ଚି ଯାଇଛି ।

ଏତ ହେଲା ବିଶ୍ୱମାନବର ନୈତିକ ସମସ୍ୟା, ଏହା ସଙ୍ଗେ ପୁଣି ରହିଛି ବହୁ ସ୍ଥାନୀୟ ସମସ୍ୟା—ଯାହା ଆମେ ଏପର୍ଯ୍ୟନ୍ତ ସମାଧାନ କରିପାରିନାହୁଁ । ଆମେରିକାରେ ବର୍ଣ୍ଣବିଦ୍ୱେଷ ଭଳି, ଆମ ଦେଶରେ ବି ଆଜି ପର୍ଯ୍ୟନ୍ତ ହିନ୍ଦୁ

ମୁସଲମାନ, ସବର୍ଣ୍ଣ ହରିଜନ, ଭାଷା ଓ ପ୍ରାଦେଶିକତାର ବିଦ୍ୱେଷ ବେଶ୍ ତୀକ୍ଷ୍ଣଭାବେ ଆମର ଆଖିରେ ଆଙ୍ଗୁଠି ଗେଞ୍ଜି ଆମକୁ ଅନ୍ଧ କରିଦେବାକୁ ବସିଲଣି ।

**ବନ୍ଧୁଗଣ !**

ଏହି ପ୍ରକାର ବ୍ୟକ୍ତିଗତ ମାନସିକ ସଙ୍କଟ ଅବାନ୍ତର ସାମାଜିକ ବିଦ୍ୱେଷମାନ ପୁଞ୍ଜିବାଦୀ ଅର୍ଦ୍ଧ ପୁଞ୍ଜିବାଦୀ ଓ ତଥାକଥିତ ଗଣତାନ୍ତ୍ରିକ ରାଷ୍ଟ୍ରମାନଙ୍କରେ ଦେଖା ଦେଇଛି । ସେ ସବୁ ଦେଶମାନଙ୍କରେ ମଣିଷ ମଣିଷ ଭିତରେ ଘୋର ଅହଂଗ୍ରସ୍ତ ପାଶବିକ ପ୍ରତିଯୋଗିତାମାନ ଚାଲିଛି । ଫଳରେ ବ୍ୟକ୍ତି ସେଠାରେ ସର୍ବଦା ଅସ୍ଥିର ଓ ଆଶଙ୍କାଗ୍ରସ୍ତ ନିଜର ନିରାପତ୍ତା ଓ ପ୍ରତିଷ୍ଠା ଲାଗି ସତତ ବିବ୍ରତ ଓ ବ୍ୟାକୁଳ । ଫଳରେ ସେ ଦେଶର ଯୁବକଯୁବତୀମାନଙ୍କ ମଧ୍ୟରେ ମାନସିକ ବିକୃତି ଓ ସ୍ନାୟବିକ ବିକ୍ଷେପର ଉତ୍ପାତ ବଢ଼ି ଚାଲିଛି । ସେ ଦେଶର ସାହିତ୍ୟ, ସଙ୍ଗୀତ ଓ କଳାରେ ଏହି ସବୁ ବିକ୍ଷେପ ଓ ବିକୃତିର ଚିହ୍ନ ସ୍ପଷ୍ଟ ହୋଇ ଉଠିଛି । ଫଳରେ ସେହି ସବୁ ଦେଶ-ମାନଙ୍କରେ ସମାଜ ସାହିତ୍ୟଠାରୁ ଓ ସାହିତ୍ୟ ସମାଜଠାରୁ ଏହି ବିକୃତି ଓ ବିକ୍ଷେପକୁ ଗ୍ରହଣ କରି ପରସ୍ପରଦ୍ୱାରା ପିଷ୍ଟ ଓ ପୀଡ଼ିତ ହେଉଛନ୍ତି । ସତ୍ୟ-ବିକୃତିର ଏହି ଘୋର ଗର୍ଜ୍ଜନମୁଖର ଜୟଗାନ ନିଶ୍ଚିତଭାବେ ଏକ କ୍ଷୟିଷ୍ଣୁ ବା ମୁମୂର୍ଷୁ ସଭ୍ୟତାର ମରଣକାଳୀନ ଆର୍ତ୍ତନାଦ ଛଡ଼ା ଆଉ କିଛି ନୁହେଁ ।

ମାତ୍ର ପୃଥିବୀର ସର୍ବତ୍ର ଏହି ଏକା ଦୃଶ୍ୟ ଦୃଷ୍ଟିଗୋଚର ହେଉନାହିଁ । ଯେଉଁ ସବୁ ଦେଶରେ ମଣିଷମାନେ ଅନ୍ୟ ସଙ୍ଗେ ସ୍ୱାର୍ଥର ପ୍ରତିଦ୍ୱନ୍ଦିତା ନ କରି ଏକ ସାମାଜିକ ସହଯୋଗତାଦ୍ୱାରା ସମଗ୍ର ଜାତିର କଲ୍ୟାଣପାଇଁ ସଚେତନ ଓ ସନ୍ଧିତ୍ସୁ ହୋଇଉଠିଛନ୍ତି ,ସେଠାରେ ଏହି ଧରଣର ମାନସିକ ବିକୃତି ବା ନିଃସଙ୍ଗପୀଡ଼ା ନାହିଁ । କାରଣ ସେଠାରେ ବ୍ୟକ୍ତିର ଦାନରେ ସମାଜବାଦର ନିର୍ମାଣ ଚାଲିଛି । ସେଠାରେ ମଣିଷମାନେ ଏକ ନୂତନ ସମାଜ ନିର୍ମାଣର ସ୍ୱପ୍ନ ଓ ବାସ୍ତବତାକୁ ପ୍ରତ୍ୟକ୍ଷ କରୁଛନ୍ତି—ସମ୍ମୁଖୀନ ହେଉଛନ୍ତି । ସେଠାରେ ପ୍ରତିଟି ନିର୍ମାଣ ପଛରେ ପ୍ରତ୍ୟେକ ବ୍ୟକ୍ତି କାନ୍ଧକୁ କାନ୍ଧ ଲଗାଇ ଲାଗିପଡ଼ିଛନ୍ତି । ସେଠାରେ ପ୍ରତିଟି ସାଫଲ୍ୟ ବା ସିଦ୍ଧି ଲାଗି ସମସ୍ତଙ୍କର ଗର୍ବବୋଧ କରିବାର ଅଧିକାର ଆସିଛି । ତେଣୁ ଜଣକର ବିପଦ ବା ଯନ୍ତ୍ରଣାକୁ ସମସ୍ତେ ନିଜର ବୋଲି ଆଦରି ନେଇପାରୁଛନ୍ତି । ଅବଶ୍ୟ ସେଠାରେ ମଧ୍ୟ ବ୍ୟକ୍ତିର ନିଜସ୍ୱ ସମସ୍ୟାମାନ ରହିଛି । ମାତ୍ର ସମାଜଠାରୁ ଏହି ବିଚ୍ଛିନ୍ନତାବୋଧ ଓ ତଜ୍ଜନିତ ମାନସିକ ବିକୃତି ସେଠାରେ ସମ୍ପୂର୍ଣ୍ଣଭାବେ ତିରୋହିତ ।

**ସୁଧୀବୃନ୍ଦ !**

ଆମ ଦେଶର କଥା ଭାବି ଦେଖନ୍ତୁ । ସ୍ୱାଧୀନତା ପାଇବା ପରଠାରୁ ଆଜି ପର୍ଯ୍ୟନ୍ତ ଆମେ ଶାସନକଳର ସମର୍ଥନରେ ଏକ ପ୍ରତିଦ୍ୱନ୍ଦ୍ୱିତାମୂଳକ ଆଦର୍ଶ

ପାଇଅଛୁ । କେବଳ ଭୁଣ୍ଡରେଇ ସହଯୋଗିତାର କଥା କହି ଚାଲିଛୁ । ପ୍ରତ୍ୟେକ-ପ୍ରତ୍ୟେକଙ୍କୁ ପଛରେ ପକାଇ ଦେଇ ନିଜର ଜୀବନ, ପ୍ରତିଷ୍ଠା ଓ ଅଭିବୃଦ୍ଧି ପାଇଁ ଅତି ବ୍ୟାକୁଳ ଓ ଧୁରନ୍ଧର ଭାବେ ନିଯୁକ୍ତ ବ୍ୟଗ୍ର—ଚେଷ୍ଟିତ । ଫଳରେ ଆମର ସମାଜ ଜୀବନରେ ବି ବର୍ତ୍ତମାନ ସେହି ଅନାସ୍ଥା ଓ ନିଃସଙ୍ଗତା ସଂକ୍ରମିତ ହୋଇଗଲଣି । ସ୍ୱାର୍ଥପରତା ଓ ନିଃସଙ୍ଗତା—ଏକ ଆରେକକୁ ଅନୁସରଣ କରିଥାଏ । ଏହି ରୋଗ ସରୀସୃପ ଗତିରେ ଗାଁଗହଳକୁ ମଧ୍ୟ କ୍ରମେ ବ୍ୟାପି ଚାଲିଛି । ଆମର ଏହି ପ୍ରତିଦ୍ୱନ୍ଦ୍ୱିତା-ମୂଳକ, ରାଜନୈତିକ ଓ ଆର୍ଥନୀତିକ ସ୍ୱାର୍ଥକୂଟ ଆଦର୍ଶ ଉପରେ ପ୍ରତିଷ୍ଠିତ ସମାଜର ଯେତେକ ବୈକଲ୍ୟ—ତାହାହିଁ ହୋଇଛି ଆମର ଆଧୁନିକ ସାହିତ୍ୟଗୁଡ଼ିକର ବିଷୟବସ୍ତୁ । ଏହି ବୈକଲ୍ୟ ପୁଣି କଲିକତା, ବମ୍ବେ ଓ ଦିଲ୍ଲୀ ପ୍ରଭୃତି ଅତିକାୟ ଦାନବିକ ନଗରମାନଙ୍କରୁ ହାଓ୍ୱାରେ ଉଡ଼ି ଆସୁଛି କଟକ, ପୁରୀ, ଭୁବନେଶ୍ୱର ଓ ସମ୍ବଲପୁରକୁ ।

ମାତ୍ର ଏଥିଲାଗି ଖୁବ୍ ବେଶୀ ଆତଙ୍କିତ ହୋଇ ପଡ଼ିବାର ମଧ୍ୟ କାରଣ ନାହିଁ । କାରଣ ସେହି ଯୁବସମାଜ ମଧ୍ୟ ଏ ସବୁ ଅଭିଜ୍ଞତା ବା ଅନୁଭୂତି ସମ୍ବନ୍ଧେ ବେଶ୍ ସଚେତନ ହୋଇ ଉଠିଲେଣି । ପ୍ରତିଦ୍ୱନ୍ଦ୍ୱିତାମୂଳକ ସମାଜ ବା ରାଷ୍ଟ୍ରମାନଙ୍କର ଶୋଚନୀୟତା ସେମାନଙ୍କ ଆଖିକୁ ଜଳ ଜଳ ଦିଶିଲଣି । ଖୁବ୍ ଶୀଘ୍ର ଭାରତର ରାଜନୀତି ଓ ଅର୍ଥନୀତି କ୍ଷେତ୍ରରେ ଏକ ଉନ୍ମୂଳ ପରିବର୍ତ୍ତନ ଘନେଇ ଆସୁଛି । ଆମର ଦୃଢ଼ ପ୍ରତ୍ୟୟ ଆସୁଛି ଯେ ଭାରତର ଅତୀତ ଆଧ୍ୟାତ୍ମିକ ପୃଷ୍ଠଭୂମିରେ—ରାଷ୍ଟ୍ର ଓ ସମାଜର ପ୍ରତିଟି କ୍ଷେତ୍ରରେ ଏହି ସହଯୋଗିତାର ଆଦର୍ଶ ହିଁ ଖୁବ୍ ସହଜରେ ଖୁବ୍ ଶୀଘ୍ର ପ୍ରତିଷ୍ଠିତ ହୋଇଯିବ । ଆମର ଯୁବସାହିତ୍ୟିକ ଓ ଚିନ୍ତାଶୀଳ ଗୋଷ୍ଠୀ, ସେହି ରକ୍ଷଣଶୀଳ, ଶଙ୍କାଗ୍ରସ୍ତ, ଛଦ୍ମବେଶୀ, ସ୍ୱାର୍ଥନିଷ୍ଠ ପୁରାତନୀମାନଙ୍କ ପ୍ରତି ଯେପରିଭାବେ ଅସହିଷ୍ଣୁ ହୋଇ ଉଠିଲେଣି—ସେଥିରେ ସେମାନଙ୍କର କ୍ରୋଧ, ପ୍ରଲାପ, ଉନ୍ମତ୍ତତା ଓ ଗାଳିଗୁଲଜ ମଧ୍ୟରେ ବି କିଛି ଗୋଟାଏ ଧ୍ରୁବ ବା ମହତ୍ତର ସତ୍ୟ ଲାଗି ବ୍ୟାକୁଳତା ବେଶ୍ ପ୍ରକଟିତ ହୋଇ ଉଠୁଛି ।

**ବନ୍ଧୁଗଣ !**

ବର୍ତ୍ତମାନ ସମାଜରେ ସବୁକିଛିକୁ ଭାଙ୍ଗିବା କାର୍ଯ୍ୟ ଚାଲିଅଛି । ଏହି ଭାଙ୍ଗଣି-ନିଆରେ ଭୈରବଙ୍କ ଦୁର୍ଗ ଭାଙ୍ଗୁଛି—ସାଧୁଙ୍କ ମନ୍ଦିର ମଧ୍ୟ ବେଳେବେଳେ ଭାଙ୍ଗୁଛି । ତେବେ ଯାଉ—ସବୁକିଛି ଭାଙ୍ଗିଯାଉ । ମହାକାଳ ଯେତେବେଳେ ପଶ୍ଚାତ୍ ଦୃଷ୍ଟି ନିକ୍ଷେପ କରି ନିଜକୁ ସଂଶୋଧନ କରି ବସେ—ସେତେବେଳେ ସେ ଆଉ ଆପେକ୍ଷିକ ଭାବେ ଭୁଲ୍ ଠିକ୍ ବାଛେ ନାହିଁ । ତା'ର ଲକ୍ଷ୍ୟ ଥାଏ ପରମ ସତ୍ୟ, ପରମ ଶିବ ଓ

ପରମ ସୁନ୍ଦରର ପ୍ରତିଷ୍ଠା । ସେହି ଲକ୍ଷ୍ୟରେ ତାକୁ ଭାଙ୍ଗିବାର ନିଶା ଧରିଯାଏ । ଆମର ଧ୍ୱଂସର ଦେବତା ବା ପ୍ରଳୟର ଦେବତା ତ ଚିରଦିନ ନିଶାଖୋର; କିନ୍ତୁ ସେହିତ ପୁଣି ଶିବ । ଆମର ଆଶା ଆମ ସାହିତ୍ୟିକମାନେ ସେହି ଶୈବ-ସାହିତ୍ୟ ସୃଷ୍ଟି କରିବାରେ ବ୍ରତୀ ହେବେ । ସେ ସାହିତ୍ୟରେ ଅସତ୍ୟ, ଅଶିବ ଓ ଅସୁନ୍ଦରର ଦୁର୍ଗମାନ ଭୁଷୁଡ଼ି ପଡ଼ିବାର—ଭାଙ୍ଗି ପଡ଼ିବାର ଶବ୍ଦ ଶୁଭୁଥିବ; କିନ୍ତୁ ସେହି ଶବ୍ଦ ତଳେ ତଳେ ଯେତେ ପ୍ରଚ୍ଛନ୍ନ ହେଉ ପଛେ—ଯେମିତି ଅନୁଧ୍ୱନିତ ହେଉଥିବ ଆଗାମୀ ପୃଥିବୀର, ଆଗାମୀ ସମାଜର ସତ୍ୟ ଶିବ ସୁନ୍ଦର ରୂପ ପ୍ରତିଷ୍ଠାର ସୃଜନାତ୍ମକ ଓ ପ୍ରେରଣାତ୍ମକ ପ୍ରତିଧ୍ୱନି ।

## ସୁଧୀ ସାଧକବୃନ୍ଦ !

ଏହି ଅବସରରେ ମୁଁ କେବଳ ଏତିକି ସୂଚାଇ ଦେବାକୁ ଚାହେଁ କି, ଆମ୍ଭେମାନେ ଯେମିତି କେବଳ ପ୍ରଚଳିତ ବା ପ୍ରାଚୀନ ଜୀବନଧାରା ଉପରେ ନିର୍ଭର ହେବାରେ ଆମର ସମସ୍ତ ଶକ୍ତି ନ ଖଟାଉ—ଆମ୍ଭମାନଙ୍କୁ ମଧ୍ୟ ଖୋଜିବାକୁ ହେବ ଏବଂ ବାଛି ନେବାକୁ ପଡ଼ିବ ଖୁବ୍ ନିଷ୍ଠାପରଭାବେ, ସତତାର ସହିତ ଆମ୍ଭେ ଆମର ଜୀବନକୁ ଓ ଆମର ଏ ପୃଥିବୀକୁ କିପରି କୋଉ ଆଦର୍ଶରେ ଗଢ଼ିବାକୁ ଚାହୁଁଛୁ । ସେହି ଆଦର୍ଶ ସମ୍ବନ୍ଧେ ଆମର ଚେତନା ସ୍ପଷ୍ଟ ଓ ଧ୍ରୁବ ହୋଇଗଲେ—ଆମର ନିଜ ଜୀବନ ମଧ୍ୟ ତଦନୁଯାୟୀ ନିୟନ୍ତ୍ରିତ କରିବାକୁ ଚେଷ୍ଟା କରିବ ଏବଂ ସେହି ଅନୁଭୂତି ଓ ଅଭିଜ୍ଞତା ଦେଇ ସମାଜକୁ ମଧ୍ୟ ଗଠନ କରିବାର ସ୍ୱପ୍ନ ଦେଖିବୁ । ତେଣୁ ମୁଁ ପୁଣିଥରେ ଦୃଢ଼-ଭାବେ ଘୋଷଣା କରୁଛି ଆମ ଜୀବନରେ ବା ସାହିତ୍ୟରେ ନୈରାଶ୍ୟର ବା ପଛଘୁଞ୍ଚା ଦେବାର ପ୍ରଶ୍ନ ଆଉ ଉଠୁ ନାହିଁ । ଆମ ଜୀବନରେ ବା ଆମ ସାହିତ୍ୟ ଭିତରେ ସେହି ଆଶାତୀତ ଆଶା ସେହି ବିଶ୍ୱାସାତୀତ ବିଶ୍ୱାସ ଓ ଅସାଧ୍ୟ ସାଧନାର ସୁର୍ ବାଜିଉଠୁ—ଆଜି ଏହି ଶୁଭ ସାରସ୍ୱତ ମିଳନ ପୀଠରେ ମୋର ଏତିକି ମାତ୍ର କାମନା ।

## ବନ୍ଧୁଗଣ !

ଆଜି ଏବର୍ଷର ବିଷୁବ ମିଳନର ଉଦ୍‌ଯାପନ ଦିବସ । ସାହିତ୍ୟହିଁ ଆମ୍ଭମାନଙ୍କୁ ଏକତ୍ର କରିଛି—ସମ୍ମିଳିତ କରିଛି । ବୈଦିକ ଋଷିଙ୍କର ସେହି ମହାନ୍ ମିଳନର ମନ୍ତ୍ର ଗାନକରି ମୁଁ ଆପଣମାନଙ୍କୁ ଆନ୍ତରିକ ଥରେ ଅଭିନନ୍ଦନ ଜଣାଉଛି ।

ସଂଗଚ୍ଛଧ୍ୱଂ ସଂବଦଧ୍ୱଂ ସଂବୋ ମନାଂସି ଜାନତାମ୍
ଦେବା ଭାଗଂ ଯଥା ପୂର୍ବେ ସଂଜାନାନା ଉପାସତେ ।

ହେ ମନୁଷ୍ୟ ! ତୁମେ ସମସ୍ତେ ମିଳିମିଶି ଚାଲ । ମିଳିମିଶି ବାର୍ତ୍ତାଳାପ କର । ପରସ୍ପର ସହଯୋଗପୂର୍ବକ ଜ୍ଞାନ ପ୍ରାପ୍ତକର । ପୂର୍ବକାଳର ମନୁଷ୍ୟଗଣ ଏହିରୂପେ ଜ୍ଞାନପ୍ରାପ୍ତ କରି ଥିଲେ ।

ସମାନୋ ମନ୍ତ୍ରଃ ସମିତିଃ ସମାନୀ ସମାନଂ ମନଃ ସହଚିତ୍ତ ମେଷାମ୍
ସମାନଂ ମନ୍ତ୍ରମଭିମନ୍ତ୍ରୟେ ବଃ ସମାନେନ ବୋ ହବିଷାଜୁହୋମି ।
(ଋଃ ବେ)

ହେ ମନୁଷ୍ୟ ! ତୁମ୍ଭମାନଙ୍କର ମନ୍ତ୍ରଣା ଓ ସଭାସ୍ଥଳ ସମାନ ହେଉ । ମନ ଓ ଚିତ୍ତ ସମାନ ହେଉ । ମୁଁ ତୁମ୍ଭମାନଙ୍କ ନିମିତ୍ତ ସମାନ ମନ୍ତ୍ରଣା ଦେଉଛି । ଐଶ୍ୱର୍ଯ୍ୟ ଓ ଅଭ୍ୟୁଦୟ ପ୍ରାପ୍ତି ଲାଗି ଶ୍ରେଷ୍ଠକର୍ମରେ ନିରନ୍ତର ନିୟୋଜିତ ରହ ।



# ଓଡ଼ିଆଭାଷା ଓ ସାହିତ୍ୟ

ଓଡ଼ିଆ ସାହିତ୍ୟର ଭବିଷ୍ୟତ୍ ଯେ ଓଡ଼ିଆଭାଷାର ବହୁମୁଖୀ ପ୍ରସାରତା ଉପରେ ନିର୍ଭର କରୁଛି ଏହା ସର୍ବବାଦୀସମ୍ମତ । ସରକାରୀସ୍ତରରେ ଓ ବିଶ୍ୱବିଦ୍ୟାଳୟ ସ୍ତରରେ ଓଡ଼ିଆକୁ ପ୍ରଚଳନ କରିବାଲାଗି ଓଡ଼ିଶାରେ ବହୁପୂର୍ବରୁ ଆନ୍ଦୋଳନ ଆରମ୍ଭ ହୋଇଯାଇଛି । ଏହା ନିଶ୍ଚିତଭାବେ ଏକାଧାରରେ ଏକ ରାଜନୀତିକ ଓ ଶିକ୍ଷାଗତ ସମସ୍ୟା । ଏହାର ବିଚାର ସେଥିଲାଗି ସ୍ୱତନ୍ତ୍ରଭାବେ ବିଭିନ୍ନ ଦୃଷ୍ଟିକୋଣରୁ ହେବା ଉଚିତ, ମାତ୍ର ନିରୁତା ସାହିତ୍ୟିକ ବିଚାର ମାନଦଣ୍ଡରେ ଓଡ଼ିଆଭାଷା ସମସ୍ୟା ଅନ୍ୟ ଦିଗରୁ ଆଲୋଚ୍ୟ । ଓଡ଼ିଆଭାଷା ବର୍ତ୍ତମାନର ଜଟିଳ ଭାବ ଓ ଚିନ୍ତା ପ୍ରକାଶଲାଗି ସାର୍ଥକ ଓ ପ୍ରଚୁର କ୍ଷମତା ଅର୍ଜନ କରିନାହିଁ—ଏହା ନିଷ୍ଠାପର ସାହିତ୍ୟିକ ମାନେଇ ଅନୁଭବ କରୁଥିବେ । କାରଣ ଆଧୁନିକ ଲେଖକ କେବଳ ମାତୃଭାଷାସୂତ୍ରେ ତାଙ୍କ ଚିନ୍ତା ବା ଅନୁଭୂତିର ଖିଅ ପାଉନାହାନ୍ତି । ସେମାନେ ଅନ୍ତତଃପକ୍ଷେ ଇଂରାଜୀକୁ ମିଶାଇ ତିନୋଟି ଅଧିକା ଭାଷା ଜାଣିଛନ୍ତି । ଆଉ ବିଶେଷ କରି ଇଂରାଜୀ ଭାଷାରେ ହିଁ ପଦାର୍ଥବିଜ୍ଞାନ, ରସାୟନବିଜ୍ଞାନ, ଗଣିତ ଓ ବୀଜ ବା ଉଦ୍ଭିଦ-ବିଜ୍ଞାନଠାରୁ ଆରମ୍ଭ କରି କୃଷି, ସ୍ୱାସ୍ଥ୍ୟ, ଦର୍ଶନ, ମନସ୍ତତ୍ତ୍ୱ, ରାଜନୀତି ଓ ଅର୍ଥନୀତି ଆଦି ଆଧୁନିକ ଜ୍ଞାନ-ବିଜ୍ଞାନ ଜଗତର ବିଭିନ୍ନ ଉପାଦାନରେ ତା'ର ମସ୍ତିଷ୍କ ଗଠିତ । ପୁଣି ସେଇ ମସ୍ତିଷ୍କ ପ୍ରସୂତ ମନନଶୀଳତା ଆଉ ସେଇ ସୂତ୍ରରେ ଲାଭ କରିଥିବା ତା'ର ଯାବତୀୟ ଅନୁଭୂତି ଓ ଅଭିଜ୍ଞାନ । ସେ ସବୁକୁ ସେ ତା'ର ମାତୃଭାଷାରେ କିପରି ପ୍ରକାଶ କରିବ—ଯଦି ତଦ୍‌ବିଦ୍‌ମାନେ ସେହି ଜ୍ଞାନବିଜ୍ଞାନଗୁଡ଼ିକୁ ଆଗରୁ ଓଡ଼ିଆଭାଷାରେ ପ୍ରଚୁରଭାବେ ପ୍ରକାଶ କରି ନ ଥାନ୍ତି ? ଓଡ଼ିଆଲେଖକ ତା'ର ମାତୃଭାଷାରେ ଜ୍ଞାନବିଜ୍ଞାନର ତତ୍ତ୍ୱ, ତଥ୍ୟ ଓ ପରିଶୀଳନ ସଙ୍ଗେ ଆନ୍ତରିକଭାବେ ପରିଚିତ ନ ହେଲେ—ତା'ର ଉପନ୍ୟାସ, ନାଟକ ଓ କବିତାପ୍ରଭୃତି ମୌଳିକ ରଚନାରେ ଉଚ୍ଚାଙ୍ଗ ପର୍ଯ୍ୟାୟ ଆଶା କରିବା ବୃଥା ।

ଖାଲି ଲେଖକ ନୁହନ୍ତି—ଓଡ଼ିଆ ପାଠକ, ଯାହାଙ୍କୁ ଆମେ ସାଧାରଣ ପାଠକ ବୋଲି କହୁ —(ଯେଉଁମାନେ ବହି କିଣିବେ—ପଢ଼ିବେ, ବୁଝିବେ – ଫଳରେ ଓଡ଼ିଆ ସାହିତ୍ୟ ଏକ ଆର୍ଥନୀତିକ ପ୍ରତିଷ୍ଠା ଲାଭ କରିବା ହେତୁ ବଞ୍ଚି ପାରିବ) ସେମାନେ ମଧ୍ୟ ଆଧୁନିକ ଜ୍ଞାନବିଜ୍ଞାନର ଚିନ୍ତାଧାରା ସଙ୍ଗେ, ତାଙ୍କର ମାତୃଭାଷା ମାଧ୍ୟମରେ ପରିଚିତ ହେବା ଉଚିତ । ତା’ହେଲେ ଯାଇ ସେମାନଙ୍କର ‘ରୁଚି’ ଉନ୍ନତ ହେବ ଓ ବୋଧ-ଶକ୍ତିର ପରିସର ବଢ଼ି ଚାଲିବ । ତା’ ନ ହେଲେ—ତୃତୀୟ ଶ୍ରେଣୀ ଲେଖାର ଗ୍ରାହକ ଓ ତା’ର ଲେଖା ଉଭୟେ ବଢ଼ି ଚାଲିବେ । ଆଉ କହିବା କ୍ୱଚିତ୍ ଉଚ୍ଚାଙ୍ଗ କବିତାଟିଏ, ଗପଟିଏ, ଉପନ୍ୟାସଟିଏ ବା ନାଟକଟିଏ ବାହାରିଲା ମାତ୍ରେଇ ଚିତ୍କାର ଉଠିବ—‘ଦୁର୍ବୋଧ’ – ‘ଦୁର୍ବୋଧ’—‘ନୀରସ’—‘ନୀରସ’ !

ଓଡ଼ିଆ ଭାଷା ବଞ୍ଚିବାଲାଗି ଓ ଏ ଭାଷାରେ ଲିଖିତ ସାହିତ୍ୟର ବିଭିନ୍ନ ବିଭାଗ ଅଧିକତର ଭାବ ଓ ଚିନ୍ତାର ଐଶ୍ୱର୍ଯ୍ୟରେ ପୁଷ୍କଳ ହେବାଲାଗି—ବର୍ତ୍ତମାନ ଆମର ସବୁଠୁଁ ବେଶୀ ଦରକାର—ବିଦେଶୀ ଜ୍ଞାନ ଭଣ୍ଡାରରୁ ଅନୁବାଦ ସୂତ୍ରରେ ବହୁ ରତ୍ନ ଆହରଣ—ଏବଂ ନିଜ ମାତୃଭାଷାରେ ସାଧାରଣ ବୋଧଲକ୍ଷ୍ୟରେ ବିଜ୍ଞାନ, ଅର୍ଥନୀତି, ଦର୍ଶନ ଓ ରାଜନୀତି ତଥ୍ୟ ତତ୍ତ୍ୱାଦିର ମୌଳିକ ପରିବେଷଣ ।

ଆଶାକରୁଁ—କଲେଜ ଓ ବିଶ୍ୱବିଦ୍ୟାଳୟର ବିଜ୍ଞ ଅଧ୍ୟାପକବୃନ୍ଦ ଏ ସମସ୍ୟାକୁ ନିଜ ଉପରକୁ ନେବେ ।

* * *

## ଚିତ୍ର-ସଙ୍ଗୀତ ଓ ସାହିତ୍ୟ :

ସୁଖର କଥା ସେଥର ବିଷୁବମିଳନରେ ଶିଳ୍ପୀମାନଙ୍କର ଆଲୋଚନା-ପରିସର ଅନ୍ୟ ବର୍ଷଗୁଡ଼ିକ ଅପେକ୍ଷା ଅଧିକ ତଥ୍ୟ-ପ୍ରଚୁର ଓ ତତ୍ତ୍ୱ-ଭିତ୍ତିକ ହୋଇପାରିଥିଲା । ସେଇ ଚିରାଚରିତ ହା-ହୁତାଶ—“ଆମକୁ କେହି ପଚାରିଲେ ନାହିଁ—ଆମ ଛବି କେହି ଦେଖିଲେ ନାହିଁ—ଆମେ ଅଭାଗା ଦରିଦ୍ର ଓଡ଼ିଆ ଶିଳ୍ପୀକୁଳ – ହାୟ— ହାୟ” ଭଳି ହୀନମନ୍ୟ ଆତ୍ମାଧିକକାରୋକ୍ତିଠାରୁ ବଳି ଶୋଚନୀୟ କଥା ଆଉ ନାହିଁ । ସେଥର କିନ୍ତୁ ଶିଳ୍ପୀମାନେ ଶିଳ୍ପର ଆଙ୍ଗିକ, ବିଷୟବସ୍ତୁ ଓ ଢଙ୍ଗିରେ ନାନାଦି ପରୀକ୍ଷା ନିରୀକ୍ଷାଦି ସମ୍ପର୍କରେ ବେଶ ବୌଦ୍ଧିକ ଆଲୋଚନା କରିଥିଲେ ।

ଓଡ଼ିଶାରେ ଗୋଟିଏ କଥା ପ୍ରାୟ ଲକ୍ଷ୍ୟ କରାଯାଇଥାଏ ଯେ—ଚିତ୍ରଶିଳ୍ପୀ, ସଙ୍ଗୀତଜ୍ଞ ଓ ଅଭିନେତା ଅଭିନେତ୍ରୀଙ୍କ ସଙ୍ଗେ ସାହିତ୍ୟିକମାନଙ୍କ ସମ୍ପର୍କ ଖୁବ୍

କମ୍ । ଫଳରେ ଶବ୍ଦ ମାଧ୍ୟମ ସଙ୍ଗେ, ରେଖା, ରଙ୍ଗ ଓ ଧ୍ୱନି, ସ୍ୱର, ମୂର୍ଚ୍ଛନାହିର ମାଧ୍ୟମଗତ ମିଶ୍ର ଅନୁଭୂତିର ସମ୍ପର୍କ ଅତି କମ୍ । ତେଣୁ କଳାଠାରୁ ସାହିତ୍ୟ ଯାଏ ସବୁ କ୍ଷେତ୍ରରେ ଏକ ବିସ୍ୱାଦକର ବୈଶିଷ୍ଟ୍ୟହୀନତା ଆବଶ୍ୟମ୍ଭାବୀ ହୋଇପଡ଼ୁଛି । ଚିତ୍ର ଶିଳ୍ପୀ ବା ସଙ୍ଗୀତଜ୍ଞଙ୍କ ଯଦି ଶବ୍ଦ ମାଧ୍ୟମରେ ପ୍ରକାଶିତ ବିଭିନ୍ନ ଅନୁଭୂତି ଓ ଜ୍ଞାନ ସଙ୍ଗେ ପରିଚିତ ନ ହେଲେ—ବା ସାହିତ୍ୟିକ ମଧ୍ୟ ଯଦି ରଙ୍ଗ, ରେଖା, ସ୍ୱର ଓ ଧ୍ୱନି ମାଧ୍ୟମରେ ବିଭିନ୍ନ ରୂପ, ଛଟା, ଭାବ ଓ ତତ୍ତ୍ୱ ନିର୍ଗତ ମୂର୍ଚ୍ଛନା ସଙ୍ଗେ ଚେତନାରେ ସମ୍ମିଳିତ ନ ହେଲେ—ତେବେ ଏକ ପକ୍ଷରେ ଚିତ୍ର ଓ ସଙ୍ଗୀତ ସେମିତି ହରାଇ ବସିବେ ସେମାନଙ୍କର ଜ୍ଞାନ ଭିତ୍ତି—ଏବଂ ଅନ୍ୟ ପକ୍ଷରେ ସାହିତ୍ୟ ମଧ୍ୟ ହରାଇ ବସିବ ତାର ଚିତ୍ରବଳ ଅଭିଜ୍ଞତା ବା ଧ୍ୱନି ମୂର୍ଚ୍ଛନାର ରୂପଗତ ଓ ରସଗତ ପ୍ରାଣ ପ୍ରାଚୁର୍ଯ୍ୟ । ସବୁ ଦେଶରେ ସବୁକାଳରେ କଳାରାଜ୍ୟରେ ଏଇ ବିଭିନ୍ନ ଶିଳ୍ପୀଙ୍କ ମଧ୍ୟରେ ନିବିଡ଼ ମେଳ ରହି ଆସିଛି । ଆମର ଭାରତୀୟ ସାହିତ୍ୟରେ ମଧ୍ୟ ସେହି ପରମ୍ପରା । ମାତ୍ର କାହିଁକି ଯେ ଆଜି ସେ ସମ୍ପର୍କ ଏତେ ଦୁର୍ବଳ ହୋଇ ପଡ଼ୁଛି—ତାହା ବୁଝି ହେଉନାହିଁ । କିନ୍ତୁ ଏହା ଆଦୌ କାହା ପକ୍ଷରେ ଶୁଭଙ୍କର ନୁହେଁ ।

## ସାହିତ୍ୟ ଚର୍ଚ୍ଚା ଓ ଶାଳୀନତା :

ସାହିତ୍ୟର ପ୍ରକାଶ ବହୁମୁଖୀ, ଲକ୍ଷ୍ୟ ମଧ୍ୟ ସୁଦୂରପ୍ରସାରୀ । କିନ୍ତୁ ଏହା ନିଃସନ୍ଦେହ ଯେ ବ୍ୟକ୍ତି ଓ ସମାଜ ଜୀବନରେ ଏକ ଉନ୍ନତ ରୁଚି ସୃଷ୍ଟି କରିବାର ଦାୟିତ୍ୱ ମୂଳତଃ ସାହିତ୍ୟ ଓ ସାହିତ୍ୟିକର । ଏ "ରୁଚି"ର ପୁଣି ସ୍ୱରୂପ ଓ ସ୍ୱଭାବ ଯାହା ହେଉନା କାହିଁକି ଏବଂ ଏହାପଛେ କାଳଗତ୍ୟାନୁସାରଣୀ ହେଉ—ଶାଳୀନତା ଯେ ଏହି "ରୁଚି" ନାମକ ଭାବବାଚୀ ବିଶେଷ୍ୟ ପଦଟିର ଅସ୍ଥିମଜ୍ଜା, ଏଥିରେ କେହି ଦ୍ୱିମତ ହେବେ ନାହିଁ । ଆମର ପ୍ରଚଳିତ ସମାଜରେ ତଥାକଥିତ ରାଜନୀତିଜ୍ଞ-ମାନେ (ପ୍ରକୃତରେ କିନ୍ତୁ ରାଜନୀତି ବ୍ୟବସାୟୀ) ଏବଂ ରୁଚିହୀନ ବଣିକମାନେ ଯେଉଁ ପ୍ରକାର ବ୍ୟବହାର ପ୍ରଦର୍ଶନ କରୁଛନ୍ତି—ତାହା ଯଦି ଆମ୍ଭମାନଙ୍କର ଅନୁକରଣୀୟ ହୁଏ—"ତେବେ କାହାକୁ କହିବା, କପାଳରେ ସିନା କର ଚାଡ଼ିବା !!"

ସାହିତ୍ୟିକ ହେଉଛି ସୌନ୍ଦର୍ଯ୍ୟର ଦ୍ରଷ୍ଟା ଓ ସ୍ରଷ୍ଟା । ସେ ନିଜର ବାହ୍ୟ ଓ ଅଭ୍ୟନ୍ତରକୁ ସୁନ୍ଦର କରି ଗଢ଼େ—ପୁଣି ସୁନ୍ଦର କରି ଗଢ଼େ ତାର କଳା । ଆଉ ଏହି ଦ୍ୱିବିଧ କ୍ରିୟାଦ୍ୱାରା ସେ ସମାଜକୁ ମଧ୍ୟ ସୁନ୍ଦର କରି ଗଢ଼ିବାକୁ ବା ଅନ୍ତତଃ ତାର ସ୍ୱପ୍ନ ଦେଖେ । ଏଇ ସୌନ୍ଦର୍ଯ୍ୟସାଧନା ତାର ଜୀବନବ୍ୟାପୀ ପ୍ରୟାସ । "ଶାଳୀନତା" ହେଉଛି ଏହି ସୌନ୍ଦର୍ଯ୍ୟର ଧର୍ମ । ଆମର ଆଳାପ ସୁନ୍ଦର ହେଉ, ସଂଳାପ ମଧ୍ୟ ସୁନ୍ଦର ହେଉ—ସୁନ୍ଦର ହେଉ ଆମର ବିଳାପ । ଆମର ଅନୁରାଗ ପ୍ରକାଶପାଉ ମଧୁର ରସରେ । କ୍ରୋଧ ପ୍ରକାଶିତ ହେଉ ରୌଦ୍ର ରସରେ । ସମାଲୋଚନା ତୀବ୍ର ହେଉ ହାସ୍ୟ

(ବ୍ୟଙ୍ଗ) ରସର ସାର୍ଥକତାରେ । ତା'ହେଲେ ଯାଇ ଆମର ବ୍ୟବହାର ସାହିତ୍ୟିକ ଜନୋଚିତ ହେବ ଓ ବିଜ୍ଞର ମଧ୍ୟ ଅପରପକ୍ଷରେ ଏବଂ ଜନସାଧାରଣଙ୍କର ହୃଦୟଗ୍ରାହୀ ହେବ । ସାହିତ୍ୟିକର ଅସ୍ତ୍ର ହେଉଛି "ବାକ୍ୟ" । ମାତ୍ର ସେ ବାକ୍ୟ ପ୍ରଥମରୁ "ରସାତ୍ମକ" ହେବା ଉଚିତ । ଆମର ବାକ୍ୟ କେତେବେଳେ ରସାତ୍ମକ ହେବ ? ଯେତେବେଳେ ଆମେ ଅହଂକାରାତ୍ମକ ବିକ୍ଷୋଭରୁ ମୁକ୍ତ ପାଇ ଆମ ଅନୁଭବର ଭାବରାଜିକୁ ସଂଯତ କରିପାରିବୁ, ଯେତେବେଳେ ଯାଇ ସେ "ଭାବ" "ଗାଢ଼" ହେବ; ଏବଂ ଏହି ଗାଢ଼ ଭାବ ସେତେବେଳେ ଏକ ନୈର୍ବ୍ୟକ୍ତିକ ଅଥଚ ସାର୍ବଜନୀନ ମାଧ୍ୟମରେ ସତ୍ୟ ରୂପରେ ପ୍ରକାଶିତ ହେବ, ସେତେବେଳ ଯାଇ ଆମର ବାକ୍ୟ ହେବ "ରସଝଁରୀ" ।

ଲେଖାରେ ବା ବକ୍ତୃତାରେ ମତବାଦ ପ୍ରକାଶ କଲାବେଳେ ଏକପକ୍ଷରେ ସହନଶୀଳତା ଯେମିତି ଦରକାର, ଅପର ଅକ୍ଷରେ ବି ସେମିତି ଦରକାର ଏକ ଉଦାର, ସ୍ନେହଶୀଳ, ସଂହତ ଓ ବ୍ୟକ୍ତିଗତ ଈର୍ଷ୍ୟା-ମାଳିନ୍ୟମୁକ୍ତ ସଂସ୍କାର ପ୍ରୟାସୀ ମନୋବୃତ୍ତିର । ଓଡ଼ିଶାର ସାହିତ୍ୟ ସଭା ସମିତିରେ ଓ ପତ୍ର ପତ୍ରିକାରେ ଆମେ ସାହିତ୍ୟିକମାନେ ଯେମିତି ସୌନ୍ଦର୍ଯ୍ୟର ଦ୍ରଷ୍ଟା ଓ ସ୍ରଷ୍ଟା ଓ ରକ୍ଷକର ପରିଚୟ ଦେବା ଓ ଦିଆଇବା ସେଥିପ୍ରତି ଆମେ ସଚେତ ରହୁଁ ।



# ସାହିତ୍ୟରେ ଅବକ୍ଷୟରୁ ଅଭ୍ୟୁଦୟ

ମନୁଷ୍ୟର ଶରୀରରେ ଯେପରି ଅହରହ ଜୀବକୋଷଗୁଡ଼ିକର ବିଲୟ ଘଟୁଛି ଓ ନୂତନ ଜୀବକୋଷଗୁଡ଼ିକର ସୃଷ୍ଟି ହେଉଛି—ତଥାପି ଜୀବନର ଧାରା ଅବିଚ୍ଛିନ୍ନ ବିକାଶଶୀଳ ପଥରେ ଅଗ୍ରସର ହୋଇ ଚାଲିଛି—ସମାଜରେ ମଧ୍ୟ ତଦନୁରୂପ କ୍ରିୟା ପ୍ରତିକ୍ରିୟା ଓ ଗତିବୃତ୍ତିର ଅବ୍ୟାହତ ସଙ୍ଗଠନ ବିକାଶ ଦିଗରେ ତାକୁ ଅଗ୍ରସର କରାଇ ନେଉଛି । ପ୍ରତି ଯୁଗରେ ଓ ପ୍ରତିଦେଶରେ ନବୋଦୟ ପୂର୍ବ ଅବକ୍ଷୟକାଳରେ ଯାହା କିଛି ପୁରାତନ, ଅର୍ଥାତ୍ ଯାହା କିଛି ମାନବର ଅଗ୍ରଗତିରେ ଅନ୍ତରାୟ ଓ ପଥରୋଧକାରୀ ଭାବେ ଛିଡ଼ା ହୋଇଛି, ମନୁଷ୍ୟ ତାକୁ ସବୁଦିନେ ପରିତ୍ୟାଗ କରି ଆସିଛି; ଏବଂ ଏକ ନୂତନ ଚେତନା ଓ ଶକ୍ତିଲାଗି ଆସ୍ପୃହା କରିଛି । ସଚେତ ଭାବରେ ହେଉ ବା ଅର୍ଦ୍ଧଚେତନ ଭାବରେ ହେଉ—ତୀବ୍ର ଭାବରେ ହେଉ ବା ଧୀର ଭାବରେ ହେଉ—ସାଧାରଣ ମନୁଷ୍ୟ ଭିତରେ ଏହି ଅଗ୍ରଗତିର ଆସ୍ପୃହା ଏକ ସ୍ୱାଭାବିକ ମାନବୀୟ ଧର୍ମରୂପେ ଚିରଦିନ ସକ୍ରିୟ ହୋଇ ରହି ଆସିଛି । ତେବେ ଏହି ସାଧାରଣ ଆସ୍ପୃହା ଯେତେବେଳେ ସାମୂହିକ ଭାବରେ ଏକାଗ୍ର ହୋଇ ଉଠେ, ଘନୀଭୂତ ହୋଇ ଉଠେ, ସେତେବେଳେ ଏହା ପରିଣତ ହୁଏ ଏକ ଆହ୍ୱାନରେ । ସେତିକବେଳେ ଏହି ଆହ୍ୱାନର ଉତ୍ତର ସ୍ୱରୂପ ଉର୍ଦ୍ଧ୍ୱଲୋକରୁ ନୂତନ ଚେତନା ଅସାଧାରଣ ଶକ୍ତି ଧରି ଜନ୍ମକୁ ଅବତରଣ କରିଆସେ ଏବଂ ଏହି ଅସାଧାରଣ ଶକ୍ତିଶାଳୀ ନୂତନ ଚେତନା ନିଜକୁ ସର୍ବସାଧାରଣର ଉପଯୋଗକ୍ଷମ କରିବା ସକାଶେ କଠିନ ପ୍ରୟାସ କରେ । କାରଣ ପ୍ରଥମ ଅବସ୍ଥାରେ ବ୍ୟକ୍ତି ଓ ସମାଜ ସେହି ନୂତନ ଅସାଧାରଣକୁ ଗ୍ରହଣ କରିବାଲାଗି ସଙ୍ଗେ ସଙ୍ଗେ ପ୍ରସ୍ତୁତ ନ ଥାନ୍ତି । ମାତ୍ର ସମଗ୍ର ମାନବ ସମାଜ ଯେ ଏଥିଲାଗି ପ୍ରସ୍ତୁତ ନଥାଏ—ତା'ମଧ୍ୟ ନୁହେଁ । ସେହି ଅଗଣିତ ସର୍ବସାଧାରଣଙ୍କ ମଧ୍ୟରେ ବହୁ ପ୍ରତୀକ୍ଷମାଣ ତୀକ୍ଷ୍ଣଧୀସମ୍ପନ୍ନ, ତୀବ୍ର ଆସ୍ପୃହାବନ୍ତ ସାହସିକ ବ୍ୟକ୍ତି ସେହି ଆଗନ୍ତୁକ ଚେତନାକୁ ଧାରଣ କରିବା ପାଇଁ ଓ ତା'ର ଉପଯୋଗିତାକୁ ପରୀକ୍ଷା କରିବା ପାଇଁ

ପ୍ରସ୍ତୁତ ହୋଇଯାନ୍ତି । ନିଜ ଜୀବନର ବିନିମୟରେ ମଧ୍ୟ ସେମାନେ ଏଥିପାଇଁ ଏକ ମହନୀୟ ଦାୟିତ୍ୱ ଗ୍ରହଣ କରନ୍ତି । କାରଣ ସେମାନଙ୍କର ଏହି ସଫଳତା ଉପରେ ଅନ୍ୟ ସାଧାରଣଙ୍କର ସେହି ନୂତନ ଚେତନାକୁ ଗ୍ରହଣ ବା ବର୍ଜନ କରିବା ବିଷୟ ନିର୍ଭର କରିଥାଏ ।

ଏହି ଦୁଃସାହସିକ ବ୍ୟକ୍ତିମାନଙ୍କ ମଧ୍ୟରୁ ଜଣେ ହେଉଛନ୍ତି ଦାର୍ଶନିକ, ଦ୍ୱିତୀୟ ଜଣକ କର୍ମୀ ଓ ତୃତୀୟ ଜଣକ କବି । ପ୍ରଥମ ତପସ୍ୟା ଦାର୍ଶନିକଙ୍କର, ତାଙ୍କର ମାଧ୍ୟମରେ ଚେତନା ଭୂପୃଷ୍ଠକୁ ଓହ୍ଲାଇ ଆସେ । ଦ୍ୱିତୀୟ ତପସ୍ୟା କର୍ମୀଙ୍କର ସେ ତାଙ୍କର କର୍ମଧାରା ଓ ସଙ୍ଗଠନ ମାଧ୍ୟମରେ ସେହି ଚେତନାକୁ ପରୀକ୍ଷା କରନ୍ତି, ପ୍ରୟୋଗ କରନ୍ତି ଓ ପରିସ୍ଫୁଟ କରନ୍ତି । ଶେଷ ତପସ୍ୟାଟି କବି ବା ସାହିତ୍ୟିକର । ସେ ତାକୁ ପ୍ରଥମେ ନିଜର ଅନୁଭୂତିବେଦ୍ୟ କରି ତାଙ୍କର ଅପୂର୍ବ-ବସ୍ତୁ-ନିର୍ମାଣ-କ୍ଷମ-ପ୍ରଜ୍ଞା ବଳରେ ଏକ ଅନୁଭବମୟ ରସ ଗମ୍ଭୀର ଆହ୍ଲାଦନାତ୍ମକ ବାଣୀ ମାଧ୍ୟମରେ ସର୍ବ-ସାଧାରଣଙ୍କର ଚିତ୍ତଭୂମିରେ ସଂସ୍କାରିତ, ସଂବୋଧିତ ଓ ସଂପ୍ରେରିତ କରାନ୍ତି । ରାମାୟଣ ଯୁଗରେ ଶ୍ରୀରାମ ହିଁ ସେହି ଦାର୍ଶନିକ – ଲକ୍ଷ୍ମଣ, ଭରତ, ବିଭୀଷଣ ଓ ସୁଗ୍ରୀବ ହନୁମାନହିଁ କର୍ମୀ ଓ ବାଲ୍ମୀକି କବି । ମହାଭାରତ ଯୁଗରେ ଶ୍ରୀକୃଷ୍ଣହିଁ ଦାର୍ଶନିକ - ଯୁଧିଷ୍ଠିର ଅର୍ଜୁନାଦି ପଞ୍ଚପାଣ୍ଡବ କର୍ମୀ ଓ ମହାମତି ବ୍ୟାସଦେବ କବି । ଯୁଗକୁ ଯୁଗ ଏହିଭାବେ ଦାର୍ଶନିକ, କର୍ମୀ ଓ କବି ଏହିପରି ଏକ ନୂତନ ଚେତନାକୁ ନିଜେ ଗ୍ରହଣ କରି ପୃଥିବୀ ପୃଷ୍ଠରେ ସମାଜ-ଗ୍ରାହ୍ୟ କରାଇଛନ୍ତି । ବିଗତ ଯୁଗରେ କମ୍ୟୁନିଷ୍ଟ ଜଗତରେ କାର୍ଲମାର୍କସ, ଲେନିନ୍ ଓ ମାକ୍ସିମ୍-ଗର୍କୀ ଆଦିଙ୍କ କ୍ଷେତ୍ରରେ ମଧ୍ୟ ସେହି କଥା ପ୍ରମାଣିତ । ଏ ଯୁଗରେ ବି ଶ୍ରୀ ଅରବିନ୍ଦ, ଗାନ୍ଧିଜୀ ଓ ରବୀନ୍ଦ୍ରନାଥ ଆଦିଙ୍କ ବିଷୟକୁ ନେଇ ତଦ୍ରୂପ ବିଚାର କରାଯାଇପାରେ ।

ଯେହେତୁ ସାହିତ୍ୟ ହେଉଛି ଏକାଧାରରେ ସମାଜର ପ୍ରତିବିମ୍ବ ଓ ନିୟାମକ, ସେହି କାରଣରୁ ନବୋଦୟର ଭୂମିକାରେ ସାହିତ୍ୟ ହିଁ ସବୁଠାରୁ ବେଶୀ ଅଂଶ ଗ୍ରହଣ କରେ ଓ ନେତୃତ୍ୱର ଏକ ବିଶେଷ ପର୍ଯ୍ୟାୟରେ ଅବତୀର୍ଣ୍ଣ ହୁଏ । ନୂତନ ଚେତନାକୁ ସ୍ୱାଗତ କରିବାରେ ଓ ତାକୁ ପରୀକ୍ଷା କରିବାରେ ସାହିତ୍ୟିକ ଯେଉଁ ଦାୟିତ୍ୱ (Risk)ନିଏ, ତାହାହିଁ ତାକୁ ସେହି ଚେତନାର ସବୁ କ୍ରିୟା ପ୍ରତିକ୍ରିୟାକୁ ନିଜେ ବୋଧ କରି ଅପରକୁ ବୋଧଗମ୍ୟ କରାଇବାରେ ସାହାଯ୍ୟ କରେ ।

ଭବିଷ୍ୟତରେ ସାହିତ୍ୟର ସ୍ୱଭାବ ଓ ସ୍ୱରୂପ କ'ଣ ହେବ ତାହା ଆଲୋଚନା କରିବା ପୂର୍ବରୁ ବର୍ତ୍ତମାନ ପୃଥିବୀରେ କେଉଁସବୁ ବଳବତୀ ଭାବାଦର୍ଶ ଓ ଚେତନା ସକ୍ରିୟ ଓ ପ୍ରତିଷ୍ଠିତ ହେବାକୁ ଚେଷ୍ଟା କରୁଛନ୍ତି—ତା'ର ବିଶ୍ଳେଷଣ ହେବା ଉଚିତ୍ ।

ବିଗତ ଦେଢ଼ ଶତାବ୍ଦୀ ଧରି ପୃଥିବୀର ଗୋଟିଏ ଅଂଶ ବ୍ୟକ୍ତି ଚେତନା ଓ ତାର ଆତ୍ମିକ ଶକ୍ତିର ଉନ୍ମେଷ ଉପରେ ତତ୍ପର ରହିଛି । ବିଜ୍ଞାନର ଅଗ୍ରଗତି, ଶିଳ୍ପ-ବିପ୍ଳବ ପୁଣି ଗଣତନ୍ତ୍ର ଓ ସମାଜବାଦର ଏକ ବଳିଷ୍ଠ ନୂତନ ଭୂମିକାରେ ସମଗ୍ର ପୃଥିବୀ ବର୍ତ୍ତମାନ ଏକ ନୂତନ ସିଦ୍ଧିର ଅଧିକାରୀ । ସାମାଜିକ ଶୋଷଣ, ଉତ୍ପୀଡ଼ନ ଓ ବିଶୃଙ୍ଖଳା ଆଦିରୁ ରକ୍ଷା ପାଇବା ପାଇଁ ଏକ ଗଣତାନ୍ତ୍ରିକ ସମାଜବାଦୀ ରାଷ୍ଟ୍ରଗଠନ ଆଜି କେବଳ କମ୍ୟୁନିଷ୍ଟମାନଙ୍କର ଏକଗୁଆଁଟିଆ ଆଦର୍ଶବାଦ ହୋଇ ରହିନାହିଁ—କିମ୍ବା ମାନବ ସମାଜ ପକ୍ଷରେ ମଧ୍ୟ ଏହା ଆଉ ଏକ ଅଳୀକ ସ୍ୱପ୍ନ ନୁହେଁ । ଏହା ବର୍ତ୍ତମାନ ବିଭିନ୍ନ ଜାତିର ରୁଚି, ନୀତି, ଆଦର୍ଶ ଓ ପରମ୍ପରା ସହ ସଙ୍ଗତି ରକ୍ଷାକରି ବିଭିନ୍ନ ରୂପ ଓ ଢଙ୍ଗରେ ପ୍ରାୟ ସମସ୍ତ ରାଷ୍ଟ୍ର ଚେତନାର ଏକ ଅବଶ୍ୟ ଅଙ୍ଗୀଭୂତ ଲକ୍ଷ୍ୟ ରୂପେ ପ୍ରତିଷ୍ଠିତ ହୋଇଗଲଣି । ମାତ୍ର ମଣିଷର ଏହି ସାମାଜିକ ସିଦ୍ଧିରେ ବ୍ୟକ୍ତି-ମଣିଷର ସର୍ବାଙ୍ଗୀନ ଲକ୍ଷ୍ୟ ଓ ସ୍ୱପ୍ନ ପୂର୍ଣ୍ଣତଃ ସାଧିତ ହୋଇ ନାହିଁ—ହୋଇପାରିବ ନାହିଁ ମଧ୍ୟ । ବ୍ୟକ୍ତି ପକ୍ଷରେ ତାର ଆତ୍ମଜ୍ଞାନ, ଆତ୍ମ ଉପଲବ୍ଧି, ଆତ୍ମବିଶ୍ୱାସ ଓ ଆତ୍ମ ନିୟନ୍ତ୍ରଣ ଏବଂ ସମାଜ ଓ ବିଶ୍ୱ ସଙ୍ଗେ ତା'ର ଯଥାଯଥ ସମ୍ପର୍କ ପ୍ରତିଷ୍ଠା ହେଉଛି ପ୍ରଧାନ ଓ ପ୍ରଥମ କଥା । ୟୁରୋପରେ ଏହି ବ୍ୟକ୍ତିବାଦର ଦାବୀ ଓ ବିପ୍ଳବ ଘଟିଆସିଛି । ମାତ୍ର ଏ ଶତାବ୍ଦୀ ଯାବତ୍ ୟୁରୋପର ବ୍ୟକ୍ତିବାଦ ଏକ ଅହଂ କେନ୍ଦ୍ରିକ ସ୍ୱନିଷ୍ଠ ପ୍ରତିଷ୍ଠା ପ୍ରଭାବ ଓ ବିସ୍ତାର ଉପରେ ହିଁ ପ୍ରତିଷ୍ଠିତ ହୋଇ ଆସିଛି । କେବଳ ଭାରତବର୍ଷରେ ହିଁ ଏହି ବ୍ୟକ୍ତିବାଦ ଏକ ଅହଂ ଶୂନ୍ୟ ଆତ୍ମବୋଧର ସାର୍ବଜନୀନ ଏକତ୍ୱ ଉପରେ ବିକଶିତ ହୋଇ ଆସିଛି । ହଜାର ହଜାର ବର୍ଷ ଧରି ଆମେ ଅନ୍ତର୍ଚେତନାର ବହୁ ଗଭୀର ଗତି କରି ଯାଇଛୁ । ଆତ୍ମନେପଦୀ ଉପଲବ୍ଧି, ଚିନ୍ତା ଓ ଆତ୍ମ ନିୟନ୍ତ୍ରଣ ଉପରେ ଆମ ଅତୀତର ସାହିତ୍ୟ ଓ ସଂସ୍କୃତି ଆଧାରିତ । ସେଥି ହେତୁ ପାଶ୍ଚାତ୍ୟ ଜଗତରେ ଯେଉଁ ଅହଂ କେନ୍ଦ୍ରିକ ବ୍ୟକ୍ତି-ଚେତନାର ସଙ୍କଟ ବର୍ତ୍ତମାନ ତୀବ୍ର ହୋଇଉଠିଛି ଏବଂ ଅଧୁନା ସାମୟିକ ଭାବେ ଭାରତର ଶିଳ୍ପ-ବିକାଶ ଓ ଅନ୍ୟାନ୍ୟ ସାମାଜିକ, ଅର୍ଥନୈତିକ ବିବର୍ତ୍ତନରେ ପାଶ୍ଚାତ୍ୟ ସ୍ଥିତିବାଦୀ ଓ ବିଦ୍ରୋହୀ ଆତ୍ମ-ବିକୃତିର ଯେଉଁ ମାରାତ୍ମକ ପ୍ରତିକ୍ରିୟା ବା ପ୍ରତିଧ୍ୱନି ଆମର ବଡ଼ ବଡ଼ ଶିଳ୍ପ-ସମୃଦ୍ଧ ସହରରେ ଦେଖା ଦେଇଛି ବା ଶୁଣା ଯାଉଛି-ତାହା ମଧ୍ୟ ଆଉ ବେଶୀ ଦିନ ଦୁରାରୋଗ୍ୟବ୍ୟାଧି ରୂପେ ବଞ୍ଚିରହି ପାରିବ ନାହିଁ । କାରଣ ସମଗ୍ର ବିଶ୍ୱରେ ତ ନିଶ୍ଚୟ-ମାତ୍ର ନିର୍ଦ୍ଦିଷ୍ଟଭାବେ ଓ ସୁସ୍ପଷ୍ଟଭାବେ ଭାରତବର୍ଷରେ ବି ଗଣତାନ୍ତ୍ରିକ ସମାଜବାଦ ସାଙ୍ଗକୁ ଏକ ନୂତନ ଆଧ୍ୟାତ୍ମିକ ଆନ୍ଦୋଳନରେ ଆମର ବ୍ୟକ୍ତି-ଚେତନା ଜାଗ୍ରତ ହୋଇ ଉଠିଲାଣି । ଜର୍ମାନ ଦାର୍ଶନିକ ନିତ୍ସେ ଯେଉଁ ଅସାଧାରଣ ବୁଦ୍ଧିଦୀପ୍ତ ସଙ୍କଳ୍ପସିଦ୍ଧ, ପ୍ରାଣ—ପ୍ରାଚୁର୍ଯ୍ୟବାନ୍ ଅତି-ମାନବର ସ୍ୱପ୍ନ ଦେଖିଥିଲେ ଓ "ମନୁଷ୍ୟ ନିଶ୍ଚୟ ଅଚିରେ ନିଜକୁ ଅତିକ୍ରମ କରି ଏହି

ଅତିମାନବରେ ପରିଣତ ହେବ—ନଚେତ୍ ତାର ଧ୍ୱଂସ ଅନିବାର୍ଯ୍ୟ" ବୋଲି ଚକ୍‌କିତ ଘୋଷଣା କରିଥିଲେ ତାହାହିଁ ତ ଶେଷରେ ନାଜିବାଦ ଓ ଫାସିଷ୍ଟବାଦର ଜନ୍ମ ଦେଲା । ଓ ଡାରଉଇନ୍‌ଙ୍କର ବଞ୍ଚିବା ଲାଗି ବ୍ୟକ୍ତିଗତ ସଂଗ୍ରାମ ଓ ପ୍ରତିଯୋଗିତା ଭଳି ମତାଦର୍ଶ ଶେଷକୁ ଅତି ମାନବବାଦ ସଙ୍ଗେ ମିଶି ଦ୍ୱିତୀୟ ମହାଯୁଦ୍ଧ ପରେ ସାମାଜିକ କ୍ଷେତ୍ରରେ ନୃଶଂସ ପୁଞ୍ଜିବାଦ, ସାମ୍ରାଜ୍ୟବାଦ, ସଂକୀର୍ଣ୍ଣ ଜାତୀୟବାଦ ଓ ବ୍ୟକ୍ତିଗତ କ୍ଷେତ୍ରରେ ହିପ୍‌ପିବାଦ, ବିଟ୍‌ନିକ୍‌ବାଦ ଆଦି ଭୟଙ୍କର ଅହଂ କେନ୍ଦ୍ରିକ ମାନସିକ ବିକୃତିଗ୍ରସ୍ତ ତଥାକଥିତ ବିଦ୍ରୋହୀ ବ୍ୟକ୍ତିବାଦ ରୂପେ ଆଜି ୟୁରୋପର ସଂସ୍କୃତିକୁ ଛିନ୍ନଭିନ୍ନ କରି ଦେଇଛି । ଅବଶ୍ୟ ବ୍ୟକ୍ତି ବାଦକୁ ପୁରାପୁରି ଏକ ଗୋଷ୍ଠୀ ବା ଆଧିଶବାଦର ନିଗଡ଼ ଗ୍ରନ୍ଥି ଭିତରେ ପୂରାଇ କମ୍ୟୁନିଷ୍ଟ ଜଗତ ବ୍ୟକ୍ତିର ଅହଂକାରକୁ ସଂଯତ କରୁ କରୁ ତାର ଆତ୍ମାକୁ ମଧ୍ୟ ଚପି ମାରି ଦେବାର ଉପକ୍ରମ କରିଥିଲା । ଅବଶ୍ୟ ମନୁଷ୍ୟ ଜାତି ପକ୍ଷରେ ଆଜି ଏହି ସବୁ ବାଦ ବେଶ୍ ପୁରୁଣା ହୋଇଗଲଣି । ମନୁଷ୍ୟ ଆଜି ବହିରାକାଶ ଓ ତାର ଅନ୍ତରାକାଶ ଉଭୟ ମହାକାଶର ରହସ୍ୟକୁ ଭେଦ କରିବାକୁ ଚାହେଁ ଓ ଅଧିଗତ କରିବାକୁ ଚାହେଁ । ଆଜିର ଜଡ଼ବିଜ୍ଞାନ ଓ ମନୋବିଜ୍ଞାନ ଉଭୟେ ଖିବ୍ ଦ୍ରୁତ ଗତିରେ ସେହି ବ୍ରହ୍ମ-ଦର୍ଶନ ଓ ଆତ୍ମଦର୍ଶନ ଆଡ଼କୁ ପ୍ରତ୍ୟକ୍ଷ ପରୀକ୍ଷାମୂଳକ ଅଭିଯାନ ଆରମ୍ଭ କରି ଦେଇଛନ୍ତି । ସେଥିପାଇଁ ତ ସମସ୍ତ ପୁରାତନ ଆଦର୍ଶ ସଙ୍ଗଠନ, ନୈତିକତା ଧର୍ମ ଓ ବିଚାର ପଦ୍ଧତିକୁ ଆଜି ସିଧା ସିଧା ଅସ୍ୱୀକାର କରି ଦିଆଗଲଣି । କାରଣ ମନୁଷ୍ୟର ଅନୁସନ୍ଧିତ୍ସା ଓ ଆବଶ୍ୟକୀୟ ବାସ୍ତବତାବୋଧ ଲାଗି ସେଗୁଡ଼ିକ ବର୍ତ୍ତମାନ ଅଚଳ ହୋଇ ଉଠିଲେଣି ।

ସେଥିଲାଗି ଆମର ସାହିତ୍ୟ-ଚେତନାରେ ବି ଆମେ ଆଜି ବ୍ୟକ୍ତି ସଙ୍ଗେ ସମାଜ ଓ ଜଡ଼ ସଙ୍ଗେ ଆତ୍ମାର ଆଉ ବିଶେଷ ବିରୋଧ ଲକ୍ଷ୍ୟକରି ପାରୁନାହୁଁ ଓ ଜୀବନକୁ ଏବଂ ତାର ସମସ୍ତ ଗତି ବୃତ୍ତି କିମ୍ବା ପ୍ରତିକ୍ରିୟାକୁ କୌଣସି ନିର୍ଦ୍ଦିଷ୍ଟ ଗ୍ରନ୍ଥିରେ ପକାଇ ବିଚାର ବା ଅନୁଭବ କରିବାକୁ ପ୍ରସ୍ତୁତ ନୋହୁଁ । ଆମର ଜୀବନ ପ୍ରତି ସାହିତ୍ୟିକ ମନୋଭାବ ହୋଇ ଉଠିଲାଣି ଆମର ସଲକ୍ଷ୍ୟରେ ବା ଅଲକ୍ଷ୍ୟରେ ଆଧ୍ୟାତ୍ମିକ ବା ସେହିପରି କିଛି ଗମ୍ଭୀରତର ।

ଅବଶ୍ୟ ଏହି ଆତ୍ମଚେତନା-ପ୍ରାପ୍ତି-ପଥରେ ଜୀବନର ଅନ୍ୟାନ୍ୟ ବିଭାବ ଭଳି ଆମ ଦେଶର ସାହିତ୍ୟ ମଧ୍ୟ ଗୋଟାଏ ସନ୍ଧିକ୍ଷଣ (Transition) ଭିତରେ ଗତି କରୁଛି । ସେଥିଲାଗି ଆମର ବର୍ତ୍ତମାନର ନାଟକ, ଗଳ୍ପ, ଉପନ୍ୟାସ ଓ କବିତାରେ ପୁରାତନ ସମାଜର ସମସ୍ତ ଜୀର୍ଣ୍ଣ ଧାରଣା ବ୍ୟବସ୍ଥା ଓ ବିଧିବିଧାନ ସମ୍ପର୍କରେ ବ୍ୟଙ୍ଗ ବିଦ୍ରୂପ, ଖେଦୋକ୍ତି ଏପରିକି କୁତ୍ସାରଚନା ମଧ୍ୟ ଚାଲିଛି । ବର୍ତ୍ତମାନର ବିଦ୍ରୋହୀ ଲେଖକ ପୂର୍ବାପେକ୍ଷା ଅଧିକ ମୁକ୍ତିବାଦୀ, ବିଶ୍ଳେଷଣ ପ୍ରବଣ ଓ ଅସନ୍ତୁଷ୍ଟ ଚିତ୍ତ ହେତୁ

ବିରକ୍ତ, ଉତ୍କ୍ଷିପ୍ତ ଓ ଖାମଖିଆଲ ହୋଇ ପଡ଼ିଛି । ଏମାନଙ୍କ ମଧ୍ୟରୁ ଯେଉଁମାନେ ଅପେକ୍ଷାକୃତ ଅଳ୍ପ ପ୍ରତିଭାର ଅଧିକାରୀ ଅଥଚ ପ୍ରତିଷ୍ଠା ଓ ପ୍ରଭାବଲାଗି ଅଧିକ ବ୍ୟାକୁଳ ପୁଣି ଯେଉଁମାନେ ମନୁଷ୍ୟର ସାମଗ୍ରିକ ବା ସାମାଜିକ ଜୀବନ ସଙ୍ଗେ ଓ ତାର ଆଶା ନିରାଶା, ସୌଭାଗ୍ୟ ଓ ବିପର୍ଯ୍ୟୟ, ସ୍ୱପ୍ନ ଓ ପ୍ରୟାସ ସଙ୍ଗେ ଅନୁଭୂତିରେ ଏକାତ୍ମ ହୋଇ ନାହାନ୍ତି । ସେମାନଙ୍କର କଥା ଓ ସ୍ୱର ବିକ୍ଷୋଭାତ୍ମକ, ଧ୍ୱଂସାତ୍ମକ, ଉଦ୍‌ଭ୍ରାନ୍ତ, ଆତ୍ମକୈନ୍ଦ୍ରିକ, ହତାଶା ଓ ବ୍ୟର୍ଥତାରେ କେବଳ କୁତ୍ସା-ବିଷ ଉଦ୍‌ଗାରକ । କୌଣସି ପ୍ରତିଷ୍ଠିତ ମୂଲ୍ୟବୋଧ ଉପରେ ସେମାନେ ଆଉ ବିଶ୍ୱାସ ବା ଆସ୍ଥା ରଖି ନାହାନ୍ତି— ଅଥଚ ନୂତନ ଏକ ମୂଲ୍ୟବୋଧକୁ ଦାୟିତ୍ୱଶୀଳଭାବେ ଗ୍ରହଣ କରିବାର କୌଣସି ଆଧ୍ୟାତ୍ମିକ ବା ଶିଳ୍ପୀ ସୁଲଭ ପ୍ରବଣତା ମଧ୍ୟ ହରାଇ ବସିଛନ୍ତି । ତେଣୁ ସେହିମାନଙ୍କ ଲେଖାରୁ ମନୁଷ୍ୟର ଯେ କୌଣସି ସାମାନ୍ୟତମ ସଂଘବଦ୍ଧ ପ୍ରଚେଷ୍ଟା ବା ଆତ୍ମଗତ ଅଭୀପ୍‌ସା ଉପରେ ଆଶୀ, ନମସ୍କ୍ରିୟା ବା ବସ୍ତୁ-ନିର୍ଦ୍ଦେଶାତ୍ମକ ରସବାଣୀ ଉଚ୍ଚାରିତ ହୁଏ ନାହିଁ । ଅଥଚ ଆପଣାର ବ୍ୟକ୍ତିଗତ ବ୍ୟକ୍ତିତ୍ୱବାଦର ପ୍ରତିଷ୍ଠା ଓ ପ୍ରସାର ଉପରେ ସେମାନେ ଖୁବ୍ ଅହଂ-ସଚେତନ, ଆକାଂକ୍ଷା-ପ୍ରବଣ, ଉଚ୍ଚାଭିଳାଷୀ ଓ ଜିଦ୍‌ଖୋର୍ ।

ଅବଶ୍ୟ ସେମାନଙ୍କ ଦ୍ୱାରା ବର୍ତ୍ତମାନ ଆମ ସମାଜ ଓ ସାହିତ୍ୟରେ ଭଙ୍ଗା-ଭଙ୍ଗିର ପାଲି ଚାଲିଛି । ଆମର ଅଧିକାଂଶ କବିତା, ନାଟକ, ଗଳ୍ପ ଓ ଉପନ୍ୟାସରେ ତେଣୁ କେବଳ ଏହି ଅଚେତନ ଲକ୍ଷ୍ୟ ଭଙ୍ଗାଭଙ୍ଗିର ଅନ୍ଧାଧୁନିଆ ଛବି ଓ ସୁର ପ୍ରତି-ଫଳିତ ଓ ପ୍ରତିଧ୍ୱନିତ । ଯେହେତୁ ସମାଜର ଅନ୍ୟାନ୍ୟ ସବୁ ବିଭାଗ ବର୍ତ୍ତମାନ ବିପର୍ଯ୍ୟୟଗ୍ରସ୍ତ, ତା' ଭିତରେ ଏବଂବିଧକବି, ଗାଳ୍ପିକ ଓ ନାଟ୍ୟକାରମାନେ ସେମାନଙ୍କର ଅହଂ-ବିଧୃତ, ଉଚ୍ଚାଭିଳାଷୀ ସାମାନ୍ୟ—ଶକ୍ତିଧର—ବିନ୍ଦୁମାନ-ସ୍ଥିତିକୁ ଦୃଶ୍ୟମାନ କରିବା ଲାଗି, ବିଜ୍ଞାପିତ କରିବାଲାଗି, ଲେଖାର ଘନଘନ ଆଙ୍ଗିକ ପରିବର୍ତ୍ତନରେ ଟେକ୍‌ନିକ୍ ଓ ଶୈଳୀରେ, ନାହିଁ ନ ଥିବା ଅଜବ ଚମକ ସୃଷ୍ଟି କରିବାରେ ଖୁବ୍ ଆଗ୍ରହୀ ଓ ତତ୍ପର ହୋଇ ଉଠିଛନ୍ତି । କବିତା, ବିଶେଷତଃ ଆଧୁନିକ ଓଡ଼ିଆ ନାଟକରେ ଅନୁଭୂତିର ଅଭିବ୍ୟକ୍ତି ଓ ବିଷୟବସ୍ତୁ ନିର୍ବାଚନରେ ଏକ କିମ୍ଭୂତ କିମାକାର ଅଶୈଳ୍ପିକ ପ୍ରଚେଷ୍ଟାମୂଳକ ମନୋଭଙ୍ଗୀ, ପୁଣି ସେଗୁଡ଼ିକର ପ୍ରକାଶରେ ଏକ ବାହ୍ୟ ଅଗଭୀର ଉତ୍ତେଜନାମୂଳକ କୌଶଳ ଆବିଷ୍କାରରେ ଅତ୍ୟଧିକ ଆୟାସ ସାଧନାରେ ଆମର ଅଧିକାଂଶ ଲେଖକ ପ୍ରାଣାନ୍ତକଭାବେ ଆଗ୍ରହୀ ବୋଲି ଆଶଙ୍କା ହୁଏ । ଖଣ୍ଡବିଖଣ୍ଡିତ ସମାଜର ବିକ୍ଷିପ୍ତ ମନଯୋଗ ଆକର୍ଷଣ କରିବାକୁ ବର୍ତ୍ତମାନର ସାହିତ୍ୟିକ ବିହୁ ଚମକପ୍ରଦ ଉତ୍ତେଜନାମୂଳକ ଫନ୍ଦିଫିକର ଅବିଷ୍କାର କରିବାରେ ତା'ର ସମସ୍ତ ପ୍ରତିଭା ନିୟୋଜିତ କରୁଅଛି । ଏପରିକି ବହୁ କ୍ଷେତ୍ରରେ ବିଭିନ୍ନଗୋଷ୍ଠୀ ଗଠନ କରି ଆଜିର କବି ନିଜର ସନ୍ଧିହାନ ସ୍ଥିତି ଓ ପ୍ରତିଷ୍ଠାର ପ୍ରତିଶ୍ରୁତି ଆଦାୟର ଆୟୋଜନ କରୁଅଛି । ଏହି ପରିପ୍ରେକ୍ଷୀରେ ସମାଜ ନିଜେ ଯେପରି ଅସହାୟ, ସାହିତ୍ୟିକ ମଧ୍ୟ

ତା'ର ପ୍ରେରଣା ଓ ପ୍ରକାଶରେ ସେହିପରି ଅସହାୟ ହୋଇ ପଡ଼ିଛି, ନିଜଲାଗି ଓ ସମାଜ ଲାଗି ସେ କୌଣସି ଆଦର୍ଶ ଖୋଜି ପାଉନାହିଁ । କୌଣସି ଆଦର୍ଶକୁ ଆନ୍ତରିକ ଭାବେ ଅନୁସରଣ କରି ତାର ଫଳାଫଳ ବୁଝିବାପାଇଁ ଯେଉଁ ନିଷ୍ଠାପରତା ଓ ଧୈର୍ଯ୍ୟ ଆବଶ୍ୟକ, ସେତିକ ସହ୍ୟ କରିବାକୁ ମଧ୍ୟ ବର୍ତ୍ତମାନର ଲେଖକ ପରାଙ୍ମୁଖ ଓ ଖିନ୍ନଚିତ୍ତ । କୌଣସି ବିଶେଷ ଆଦର୍ଶବାଦ ଉପରେ ପ୍ରତିଷ୍ଠିତ କର୍ମୀ ଗୋଷ୍ଠୀପ୍ରତି ତାର ଭାବାତ୍ମକ ସହଯୋଗ ନାହିଁ । କାରଣ ସେଠାରେ ସେହି ବିଶେଷ ଆଦର୍ଶବାଦ ପାଖେ ତାର କ୍ଷୁଦ୍ର ପ୍ରତିଷ୍ଠାକାମୀ 'ଅହଂ'ଟି ଖୁବ୍ କ୍ଷୁର୍ଣ୍ଣ ବୋଧକରେ । ସେଠାରେ ସେ ଅବନତ ବା ବିନୀତ ହୋଇପାରେ ନାହିଁ । ଅଥଚ ନିଜର କ୍ଷୁଦ୍ର ଅହଂର ଆକାଙ୍କ୍ଷା ପରି-ପୋଷକ ଏକ ସଂକୀର୍ଣ୍ଣ ଗୋଷ୍ଠୀ ଗଠନ କରି ତା' ଭିତରେ ସେ ଆପଣାର ଅଭିମାନୀ ଅହଙ୍କାରର ନିରାପତ୍ତା ରକ୍ଷାଲାଗି ଅତିଶୟ ଉଦ୍ୟମୀ ହୋଇପଡ଼େ । ଏ ଅବସ୍ଥା କେବଳ ଆମ ଦେଶରେ ନୁହେଁ—ପୃଥିବୀର ତଥାକଥିତ ଗଣତାନ୍ତ୍ରିକ ରାଷ୍ଟ୍ରମାନଙ୍କରେ ଏବଂ ପୁଞ୍ଜିବାଦୀ ଓ ଅର୍ଦ୍ଧପୁଞ୍ଜିବାଦୀ ପ୍ରତିଯୋଗିତାଶୀଳ ରାଷ୍ଟ୍ରମାନଙ୍କରେ ଲେଖକକୁଳର ଏହି ଦୁରବସ୍ଥା । ଅବଶ୍ୟ ଏହାରି ଭିତରେ ବି ସବୁରି ଅଜ୍ଞାତରେ ସାମାଜିକ ଓ ସାହିତ୍ୟିକ ବିବର୍ତ୍ତନର ଏହି ଲକ୍ଷ୍ୟ ସାଧିତ ହୋଇ ଚାଲିଛି । ଶ୍ରୀ ଅରବିନ୍ଦ ତାଙ୍କ (The Power of the Spirit) ପ୍ରବନ୍ଧରେ ୟୁରୋପର ଏହି ନୂତନ ସାହିତ୍ୟିକ ଆନ୍ଦୋଳନ ସମ୍ପର୍କରେ କହିଛନ୍ତି ବିଶ୍ଳେଷଣକରି କହନ୍ତି—

"The poetry (Literature) of Europe has been a voice intensely eager and moved, but restless troubled and without a sure base of happiness and repose, vibrating with the passion of life and avid of its joy and pleasure and beauty, but afflicted also by its unrest, grief, tragedy, discord, insufficiency in-certitude, capable only of its lesser harmonies not of any great release and satisfaction."

ତେଣୁ ଅତୀତର ଏହି ଅବକ୍ଷୟ ଓ ଭବିଷ୍ୟତ-ଅଭ୍ୟୁଦୟର ଏହି ସନ୍ଧିକ୍ଷଣରେ ସାହିତ୍ୟରେ ଯେଉଁ ସବୁ ପ୍ରକାର ପରୀକ୍ଷା ନିରୀକ୍ଷା ଚାଲିଛି—ତା ଭିତରୁ ଖୁବ୍ ବଡ଼ କିଛି ଆଶା କରାଯାଇ ନ ପାରେ । କେବଳ ଅଗଭୀର ବାହ୍ୟ ଜୀବନ-ନିର୍ଭର ଖର ଅନୁଭୂତିଗୁଡ଼ିକର ପ୍ରୟାସ-କଠୋର କୌଶଳପୂର୍ଣ୍ଣ ଅଭିବ୍ୟକ୍ତି ବ୍ୟତୀତ । ଏସବୁ ଭିତରେ ତେଣୁ ଏକ ଭଗ୍ନ ସମାଜ ଓ ଭଗ୍ନ ବ୍ୟକ୍ତିତ୍ୱର ବ୍ୟର୍ଥ ମନୋରଥତା ଆକ୍ରୋଶମୂଳକ କରୁଣ ଭଗ୍ନକଣ୍ଠରେ ହିଁ ପ୍ରତିଧ୍ୱନିତ ହେଉଅଛି । ଲେଖକର ଭଗ୍ନ

ଶବ୍ଦଦର୍ପଣରେ ଏକ ଭଗ୍ନ ଜୀବନର ଛବି ହିଁ ପ୍ରତିଫଳିତ ହେଉଅଛି । ତେଣୁ ଆଜି ଆମେ ଯେଉଁ କବିଙ୍କୁ କ୍ରୁଦ୍ଧକବି ( Angry poet ) ବୋଲି କହୁଛୁ—ତାର ସ୍ୱର ଭିତରେ ବ୍ୟକ୍ତିଗତ ବ୍ୟର୍ଥ ଇଚ୍ଛାକାଙ୍କ୍ଷାର ହିଂସା ଓ ଈର୍ଷାଜନିତ ଏକ ଅସହିଷ୍ଣୁ ଆକ୍ରୋଶମୂଳକ ଚିତ୍କାର ହିଁ ଫୁଟି ଉଠୁଛି । ତାର ଅଭିଯୋଗ ଓ କ୍ରୋଧୋକ୍ତି ଭିତରେ ନା ଅଛି ଏକ ସାମୂହିକ ସାମାଜିକ ଜୀବନର ଦୁଃଖ ଯନ୍ତ୍ରଣାରେ ସମ୍ବେଦନଶୀଳ ଏକ ବିପ୍ଳବୀର ବାଣୀ—ନା ଅଛି ଆପଣା ପ୍ରକୃତିର ରିପୁମାନଙ୍କ କବଳରୁ ଉଦ୍ଧାର ପାଇ ଏକ ଆତ୍ମିକ ସ୍ଥିତିଲାଗି ଆପଣା ସଙ୍ଗେ ବିଦ୍ରୋହ ବା ସଂଗ୍ରାମ କରିବାର ଏକ ଆତ୍ମ ସମାଲୋଚନାତତ୍ପର ବଳିଷ୍ଠ ସ୍ୱଗତୋକ୍ତି । ଆଜି ଯେଉଁ ଲେଖକ ବା କବି ବିଷାଦବାଦୀ ବୋଲି ପରିଚିତ ତାର ବିଷାଦବାଦ ଭିତରେ ବି ସେହିପରି ଫୁଟିଉଠୁ ନାହିଁ ଆତ୍ମିକ ବା ସାମାଜିକ ଜୀବନ ଭିତରୁ କୌଣସି ଗଭୀରତମ ପ୍ରଦେଶନିବାସୀ ଆତ୍ମାର ଗଭୀର ଦୀର୍ଘଶ୍ୱାସ, ଯନ୍ତ୍ରଣା ବା ହାହାକାରର ମାର୍ମିକ ଆର୍ତ୍ତନାଦ । ତାର ସେହି ବିଷାଦ ହିଁ ଏତ ନିତାନ୍ତ ଅହଂକେନ୍ଦ୍ରିକ ଜୀବନ-ବ୍ୟର୍ଥତାର ଏକ ନୈରାଶ୍ୟମୂଳକ ମନୋଭାବ-ନିରୁଦ୍ଧା ସଂଗ୍ରାମ ବିମୁଖ, ସ୍ୱପ୍ନ-ବିମୁଖ ଏକ ଆପଣାକୃତ ବିଚ୍ଛିନ୍ନ ଅହଂକାରର ବିକୃତ ସିନିକାଲ ବାକ୍‌ଭଙ୍ଗୀ ବା ବାକ୍‌ଛନ୍ଦ ବା ବାକ୍ ବିଳାସ ମାତ୍ର । ଏତିକି ଛାଡ଼ିଦେଲେ ଆଉ କେତେକ ଲେଖାରେ କେବଳ ଏକ ପ୍ରାଣହୀନ, ପ୍ରେମହୀନ କାମ-ଉତ୍ତାପ-ବିବର୍ଜିତ ଯୌନ ବିକୃତିର ଛବି ଫୁଟି ଉଠୁଛି ।

ସାହିତ୍ୟରେ ଏହିଭଳି ଅବସ୍ଥାକୁ ଆମେ ସାଧାରଣତଃ ଅବକ୍ଷୟପ୍ରାଣତା ବା Decadence ବୋଲି କହୁଥାଉଁ । କିନ୍ତୁ ଏହି ଅବସ୍ଥାଟିକୁ ବୁଝାଇବାକୁ ଯାଇ ଶ୍ରୀ ଅରବିନ୍ଦ ତାଙ୍କର "New Birth or decadence" ପ୍ରବନ୍ଧଟିରେ କହନ୍ତି—"Decadence arrives when in the decline of a culture, there is nothing more to be lived or seen or said or when the poetic mind settles irretrievably into a clumsy and artificial repetition of past forms and conventions or can only escape from them into scholastic or aesthetic Prettinesses or extravagance.

କିନ୍ତୁ ଯେତେ ଭଙ୍ଗାଭଙ୍ଗି ଓ ଧସ୍ତାଧସ୍ତି ଚାଲିଥିଲେ ବି ବର୍ତ୍ତମାନର ସାହିତ୍ୟ କ୍ଷେତ୍ରରେ ଅଧମତମ ପ୍ରତିଭାବାନ୍ ଲେଖକଟି ମଧ୍ୟ ଏତିକି ଅନ୍ତତଃ ବୁଝି-ସାରିଛି ଯେ ଅତୀତର ବିଷୟବସ୍ତୁ—ଅତୀତର ଦିଗ୍‌ଦର୍ଶନ—ଅତୀତର ଦୃଷ୍ଟିଭଙ୍ଗୀ ବା ପ୍ରକାଶଭଙ୍ଗୀ—ବର୍ତ୍ତମାନ ସମ୍ପୂର୍ଣ୍ଣ ଅଚଳ ଓ ବର୍ତ୍ତମାନ ବା ଭବିଷ୍ୟତର ସାହିତ୍ୟ ସୃଷ୍ଟି ଲାଗି ତାହା ଆଉ ବିଶେଷ କିଛି ସାହାଯ୍ୟ କରି ପାରିବ ନାହିଁ । ତେଣୁ ସିନା

ଏବେ ଅସ୍ଥିରତା ଓ ପଥ ନ ପାଇ ଅପଥରେ ଏଣେତେଣେ ଦୌଡ଼ାଦୌଡ଼ି ଓ ଛଟାଛଟିର ଏବେ ବିବ୍ରତତା । ସେଥିଲାଗି ସାହିତ୍ୟର ଏବଂବିଧ ଦୁରବସ୍ଥାକୁ ଅବକ୍ଷୟ-ମାଣତା ନ କହି ଶ୍ରୀ ଅରବିନ୍ଦ ଏହି ଅବସ୍ଥାଟିକୁ ନବଜନ୍ମର ଗର୍ଭବସ୍ଥା ବୋଲି ନାମିତ କରିଛନ୍ତି ।

•

ଅବଶ୍ୟ ଏ ଅବସ୍ଥା ଆଉ ବେଶୀଦିନ ରହିବ ନାହିଁ । ସମାଜ ନିଜେ ମଧ୍ୟ ଏହି ଅସ୍ଥିର, ଅସଙ୍ଗତ, ଏବଂ ନୈରାଶ୍ୟଜନକ ଅବସ୍ଥାରୁ ମୁକ୍ତି ଖୋଜୁଛି ତାର ଅଜାଣତରେ । ବର୍ତ୍ତମାନ ମଧ୍ୟ ବହୁ ସଚେତନ ସାହିତ୍ୟିକ ନିଜ ଶକ୍ତିରେ ଏ ସଙ୍କଟର ସମାଧାନ କରି ନ ପାରିଲେ ମଧ୍ୟ ଏଥିରୁ ତ୍ରାହି ପାଇବାକୁ ବାଟ ଖୋଜୁଛନ୍ତି । ଯଥାର୍ଥ ସାହିତ୍ୟିକ ଖୋଜୁଛି ସଚେତନ ଭାବେ ଏକ ସମନ୍ୱିତ ସତ୍ୟର ଆଦର୍ଶ ଓ ପଥ । ସେ ଚାହୁଁଛି—ବ୍ୟକ୍ତି ଓ ସମାଜ ଭିତରେ ଐକ୍ୟ ସାଧନ ଲାଗି ସଂହତ ଓ ପୂର୍ଣ୍ଣ ଚେତନାର ଏକ ବଳିଷ୍ଠ ଅନୁଭୂତି । ସେ ଚାହୁଁଛି- ଆପଣାର ବ୍ୟକ୍ତିସତ୍ତାରେ ନିହିତ ତାର ଦେହ, ପ୍ରାଣ ଓ ମନର ଚେତନା ସ୍ତରଗୁଡ଼ିକରେ ବିଭିନ୍ନ ଗତିବୃତ୍ତିର ଏକ ସୁଷମିତ ସଙ୍ଗତି, ଯାହାକି ତାକୁ ତାର ସ୍ୱଆତ୍ମା ସଙ୍ଗେ ମିଳିତ କରାଇ ଦେଇ ପାରିବ । ସେ ମଧ୍ୟ ଚାହୁଁଛି ଏକ ରାଜନୀତିକ ଓ ଅର୍ଥନୀତିକ ସାମ୍ୟ ଓ ଶୃଙ୍ଖଳା ଉପରେ ପ୍ରତିଷ୍ଠିତ ସାମାଜିକ ଆତ୍ମା ସଙ୍ଗେ ନିଜ ଆତ୍ମ ପୁରୁଷର ଏକ ଅନବଦ୍ୟନ-ମୈତ୍ରୀଭାବ ।

ସଚେତନ ସାହିତ୍ୟିକର ଏହି ଐକାନ୍ତିକ ଅନ୍ୱୀକ୍ଷା ଓ ଅଭୀପ୍‌ସା ଭିତରରୁହିଁ ଜନ୍ମ ନେବେ ଆସନ୍ତାକାଲିର ସୃଜନ ଧର୍ମୀ କବି, ଗାଳ୍ପିକ ଓ ନାଟ୍ୟକାର । ସେମାନେ ସେମାନଙ୍କର ଜୀବନର ସମସ୍ତ ନିଶ୍ୱାସ, ସାଧନା ଓ ସିଦ୍ଧି ସହ ଆପଣାର ରଚନା ଭିତରେ ସ୍ୱୟଂ ଅବତୀର୍ଣ୍ଣ ହେବେ । ଜୀବନଠାରୁ ଦୂରେଇ ଯାଇ ବା ଜୀବନକୁ ତାର ପରିଧି ବାହାରୁ ତାର୍ଯକ ଦୃଷ୍ଟିରେ ଦେଖି-କିମ୍ବା ଜୀବନକୁ କେବଳ ଏକ ପରିସ୍ପେକ୍ଟିଭ ବିଷୟବସ୍ତୁ ରୂପେ ପର୍ଯ୍ୟବେକ୍ଷଣ କରି ଓ ବିଶ୍ଳେଷଣ କରି, ପୁଣି ଜୀବନ ପାଖେ ଆପଣାର ଅହଂ-ଅଧିକୃତ-ସ୍ଥିତି ଓ ଅହଂ-ଅଭିଳଷିତ-ପ୍ରତିଷ୍ଠା ଦାବୀ କରି ଏବଂ ତାଦ୍ୱାରା ବିଡ଼ମ୍ବିତ ହୋଇ ଶେଷରେ ଏସବୁର ପରିଣତି ପ୍ରତିକ୍ରିୟା ସ୍ୱରୂପ ଜୀବନ ପ୍ରତି ସଂଶୟାତ୍ମକ ବା ହତାଶାତ୍ମକ ଦୃଷ୍ଟିକୋଣରେ ସିଦ୍ଧାନ୍ତ ନେଇ ସେ ଆଉ ଭବିଷ୍ୟତର ସାହିତ୍ୟ ସୃଷ୍ଟି କରିବ ନାହିଁ ।

ଆସନ୍ତାକାଲିର ସାହିତ୍ୟିକ ଜୀବନ ସଙ୍ଗେ ଘନିଷ୍ଠଭାବେ ସଂଶ୍ଳିଷ୍ଟ ହୋଇଯିବ । ସେ ନିଜେଇ ସମାଜର ରାଜନୀତିର ଓ ଅର୍ଥନୀତିକ ସମସ୍ୟାମାନଙ୍କର ସମ୍ମୁଖୀନ ହେବ ଏକ ସାମୂହିକ ଦୃଷ୍ଟିରୁ ସମାଜର ଏକ ପ୍ରତିନିଧି ରୂପେ । ପୁଣି ସେ ନିଜେଇ ନିଜ

ଭିତରର ଅଭିଳାଷ, ଅଭୀପ୍‌ସା, ଦ୍ୱନ୍ଦ୍ୱ, ସ୍ୱପ୍ନ ଆଦି ବହୁ ପ୍ରକାରର ଅନୁଭୂତି, ପୁଣି ନିଜ ଆତ୍ମାର ବହୁ ଗଭୀର ରହସ୍ୟାତ୍ମକ ଉପଲବ୍‌ଧିମାନଙ୍କୁ ଦ୍ରଷ୍ଟା ରୂପେ ପର୍ଯ୍ୟବେକ୍ଷଣ କରି ବିଶ୍ୱଜୀବନ ସଙ୍ଗେ ନିଜର ଜୀବନକୁ ଏକାତ୍ମ କରି ନିଜର ସାଧନାଲବ୍‌ଧ ଅଭିଜ୍ଞତାକୁ ତା' ଲେଖା ଭିତରେ ପ୍ରକାଶ କରିବ । ନିଜର ଇନ୍ଦ୍ରିୟଲବ୍‌ଧ ସୀମିତ ଅଭିଜ୍ଞତାକୁ ବା ମାନସିକ-ଚେତନା-ଜନିତ ଆପେକ୍ଷିକ ଓ ଅସମ୍ପୂର୍ଣ୍ଣ ବିଚାର ଧାରାକୁ ଅତିକ୍ରମ କରି ସେ ନିଜ ଭିତରେ ଏକ ବୋଧମୟ ପୁରୁଷର ଅଭିଜ୍ଞତାକୁ ଇ ତାର ଅନ୍ତର୍ଜ୍ଞାନରୂପେ ଲଭ କରିବ । ତା' ଫଳରେ ତାର ବୋଧି (Intutive-mind) ଏପରି ସବୁ ଅପରିଜ୍ଞାତ ଅଞ୍ଚଳ ଓ ବିଷୟମାନଙ୍କ ସମ୍ପର୍କରେ ସତ୍ୟାନୁଭୂତି ଲଭ କରିବ ଯାହାକି ଆଜି ପର୍ଯ୍ୟନ୍ତ ସାହିତ୍ୟ ଭିତରେ ଆତ୍ମପ୍ରକାଶ କରି ନାହିଁ । ଆସନ୍ତାକାଲିର ସାହିତ୍ୟିକ କେବଳ ମନୁଷ୍ୟ ସମାଜ ନୁହଁ – ତା'ର ବାହାରେ ତା' ପକ୍ଷରେ ଅପରିଚିତ ବା ଅର୍ଦ୍ଧପରିଚିତ ମନେ ହେଉଥିବା ଉଦ୍ଭିଦ ଜଗତ ଓ ପ୍ରାଣୀ ଜଗତ ସଙ୍ଗେ ଏପରି ଏକାତ୍ମ ହୋଇପିବ ଯେ—ତା'ଫଳରେ ଶ୍ରୀ ଅରବିନ୍ଦ କହନ୍ତି – ସେ ବସ୍ତୁ ପ୍ରାଣୀ ଓ ଉଦ୍ଭିଦ ଜଗତରେ ଅନ୍ତର୍ନିହିତ ନୀରବ, ଅବିକଶିତ ଆତ୍ମିକ ସତ୍ତା ସମ୍ପର୍କରେ ଓ ସେସବୁଡ଼ିକର ନାନାବିଧ ବ୍ୟଞ୍ଜନା ସମ୍ପର୍କରେ ଅବହିତ ହୋଇପାରିବ – ଯାହାକି ଅଦ୍ୟାବଧି ସାହିତ୍ୟିକମାନେ କରିପାରି ନାହାନ୍ତି । ସେ ଆବିଷ୍କାର କରିବ ମନୁଷ୍ୟ ଓ ପୃଥିବୀର ଭାଗ୍ୟ ନିୟନ୍ତ୍ରଣ କରୁଥିବା ସେଇସବୁ ସୂକ୍ଷ୍ମ ସତ୍ତା ବା ଶକ୍ତିମାନଙ୍କୁ । ପୁଣି ସେମାନଙ୍କର ଗତିବୃତ୍ତିର ସମସ୍ତ କ୍ରିୟା ପ୍ରତିକ୍ରିୟାର ନିୟନ୍ତା ନିୟାମକ ରୂପେ ଏକ ଇଚ୍ଛାମୟ ସର୍ବଶକ୍ତି ସମ୍ପନ୍ନ ବିଶ୍ୱପୁରୁଷଙ୍କୁ । ତା' ଆଖିରେ ଆଉ ପାପ, ପୁଣ୍ୟ, ସୁନ୍ଦର, କୁତ୍ସିତ, ହାସ୍ୟ, ଅଶ୍ରୁ, ଜୀବନ ଓ ମୃତ୍ୟୁ ପୃଥକ ସତ୍ୟ ରୂପେ ପ୍ରତିଭାତ ହେବେ ନାହିଁ । ଅଭ୍ୟୁଦୟ ଯୁଗର କବିଙ୍କର ସମ୍ପର୍କରେ ଶ୍ରୀ ଅରବିନ୍ଦ "The Power of the Spirit" ପ୍ରବନ୍ଧରେ ସୁନିଷ୍ଟ କହନ୍ତି—

His vision will search all the ways of the present and, interpret deeply to man the sense of that which is making him and which he is making. It will reveal the Divinity in all its disguises, face all even that is ugly and terrible and baffling in the enigma of our actual human life, find its deeper aesthesis, disengage what is struggling untransformed in its outsides and make out of it by poetic sympathy material of spiritual truth and beauty"

ତା'ପରେ ଆସନ୍ନାକାଳର ସାହିତ୍ୟ ଭିତରେ ଆସନ୍ନାକାଳର ପାଠକ ପାଇବ ପରମ ମୁକ୍ତିର ବାର୍ତ୍ତା । କେବଳ ଏକ ଆଧ୍ୟାତ୍ମ ମୁକ୍ତି ନୁହଁ—ସର୍ବ ପ୍ରକାର ଦୈହିକ, ପ୍ରାଣିକ, ମାନସିକ ଓ ସାମାଜିକ ବନ୍ଧନ, ଦୁଃଖ, ଭାଗ୍ୟ ଓ ସ୍ୱୟଂ ମୃତ୍ୟୁ ହାତରୁ ମୁକ୍ତିଲାଗି ଏକ ଉଦ୍ଦୀପକ ଆହ୍ୱାନର ବଳିଷ୍ଠ ସ୍ୱର ଧ୍ୱନିତ ହେବ ଆସନ୍ନାକାଳର କବି କଣ୍ଠରୁ ଓ କାବ୍ୟ ବର୍ଣ୍ଣିତ ପାତ୍ର ପାତ୍ରୀଙ୍କ ମୁଖରୁ । ସର୍ବ ପ୍ରକାର ଅର୍ଥନୈତିକ ଓ ରାଜନୈତିକ ଶୋଷଣ ଓ ଲୁଣ୍ଠନରୁ ମୁକ୍ତିର ଡାକ ଓ ମୁକ୍ତିର ସ୍ୱାଦ ତାର ସାହିତ୍ୟ ଭିତରେ ରସ ସ୍ୱରୂପତା ପ୍ରାପ୍ତ ହୋଇ ମନୁଷ୍ୟ ଚେତନାକୁ ଏକ ଅଭିନବ ରସବୋଧରେ ଅଭିଷିକ୍ତ କରି ରଖିବ ।

ଆସନ୍ନାକାଳର ସାହିତ୍ୟରେ ମଣିଷ ସମାଜର ଏହି ସଚେତନ ବା ଅଚେତନ ମୁକ୍ତି ପିପାସାର ମୂଳଉତ୍ସ ଆବିଷ୍କୃତ ହେବ । କୌଣସି ଏକ ଆପେକ୍ଷିକ ମୁକ୍ତି ବା ସ୍ୱାଧୀନତା ସଂଗ୍ରାମର ଚିତ୍ର ବର୍ଣ୍ଣନ ନୁହଁ—ମାନବାତ୍ମାର ଚରମ ଓ ପରମ ମୁକ୍ତିର ପଥ ଦର୍ଶାଇବ ଆଗାମୀ ଯୁଗର ସାହିତ୍ୟ । ସେହି ପୁରାତନ ସଂଗ୍ରାମ ବିମୁଖ ପଳାୟନ ପନ୍ଥୀର ମୁକ୍ତି ନୁହେଁ—ସମ୍ପୂର୍ଣ୍ଣ ଜୀବନର ପରମ ଲକ୍ଷ୍ୟ ଓ ତାର ସାଧନର ସନ୍ଧାନ ଦେବ ଆଗାମୀ ଯୁଗର ସାହିତ୍ୟ । ମନୁଷ୍ୟ କିପରି ନିଜର ଅନ୍ଧ ପ୍ରବୃତ୍ତି ଓ ପ୍ରବେଗ-ମାନଙ୍କ ସଙ୍ଗେ ଯୁଦ୍ଧ କରି ନିଜକୁ ଜୟ କରିଛି—ପୁଣି ମନୁଷ୍ୟ କିପରି ତାର ସମାଜକୁ ସାମ୍ୟ, ସମନ୍ୱୟ ଓ ସଙ୍ଗତିର ଏକ ସୁଖ ଶାନ୍ତିମୟ ଅନୁଷ୍ଠାନରେ ପରିଣତ କରିପାରିଛି—ମନୁଷ୍ୟ କିପରି ତାର ସୀମିତ ଚରିତ୍ରଭୂମିର ଅଭିଜ୍ଞତା ସ୍ତରମାନଙ୍କୁ କ୍ରମାନ୍ୱୟରେ ଅତିକ୍ରମ କରି କରି ତାର ଅନ୍ତରାତ୍ମା ଦ୍ୱାରା ବିଶ୍ୱରହସ୍ୟର ବହୁଗୋପନ ସ୍ତରମାନଙ୍କର ସୂକ୍ଷ୍ମାତିସୂକ୍ଷ୍ମ ସତ୍ୟର ଉପଲବ୍ଧି କରିପାରିଛି—ତା'ର ପୁଙ୍ଖାନୁପୁଙ୍ଖ ଛବି, ଛନ୍ଦ ଓ ଗୀତିରହିବ ଆସନ୍ନାକାଳର ଗଳ୍ପ, ନାଟକ, ଉପନ୍ୟାସ ଓ କବିତା ଭିତରେ । ଆସନ୍ନାକାଳର ସାହିତ୍ୟ ହେବ ଜ୍ଞାନଗର୍ଭକ ଏବଂ ଶାନ୍ତି, ମୁକ୍ତି, ଶକ୍ତି, ଜ୍ୟୋତି, ପ୍ରେମ ଓ ଆନନ୍ଦର ଉଜ୍ଜ୍ୱଳଜ୍ୟୋତିର୍ବାର୍ତ୍ତାବହ । କ୍ଷୁଦ୍ର ଜାତୀୟତା ସଂକୀର୍ଣ୍ଣ ଧର୍ମୀୟମାତ୍ରିଲମୀ, ସାମାନ୍ୟ ଗୋଷ୍ଠୀ ନିର୍ଭରତା ବଦଳରେ ସେ ସାହିତ୍ୟ ପରିବେଷଣ କରିବ ବିଶ୍ୱଭାବ ଓ ବିଶ୍ୱାତୀତ ସତ୍ୟର ଉପଲବ୍ଧି । ଆଗାମୀ ଯୁଗର ସାହିତ୍ୟ ବ୍ୟକ୍ତିକୁ ଦେବ ସାହସ, ବିଶ୍ୱାସ, ଆତ୍ମପ୍ରତ୍ୟୟ ଏବଂ ଆତ୍ମଜ୍ଞାନ ସଙ୍ଗେ ଆତ୍ମବ୍ୟାପ୍ତି ଲାଗି ତପସ୍ୟାର ପ୍ରେରଣା । ପୁଣି ସମାଜକୁ ଦେବ ଏକ ପ୍ରାଣସ୍ପୂର୍ତ୍ତି ଆତ୍ମୀୟତାର ସହଯୋଗିତାମୂଳକ ହୃଦୟବିବସ୍ଥା, ସାମ୍ୟମୂଳକ ଭାବାଦର୍ଶ ଓ ସମଷ୍ଟିଗତ ବିକାଶରେ ଗତିବେଗ । ଏ ପ୍ରସଙ୍ଗରେ ଶ୍ରୀ ଅରବିନ୍ଦ "The Power of the Spirit" ପ୍ରବନ୍ଧରେ କହିଛନ୍ତି—

"In the greatest art and poetry ( Literature ) there should be something of the calm of the impersonal basing and elevating the effort and struggle of the personality, something of the largeness of the universal releasing and harmonising the troubled concentrations of the individual existence, something of the sense of the transcendent raising the inferior, ignorant and uncertain powers of life towards a greater strength and light and Ananda."

ଆସନ୍ନାକାଳର ଅଭ୍ୟୁଦୟ ଯୁଗରେ ରାମାୟଣ, ମହାଭାରତ, ଇଲିଆଡ୍-ଅଡେସି, ପାରାଡ଼ାଇଜ୍ ଲଷ୍ଟ ଓ ଡ଼ିଭାଇନ୍ କମେଡ଼ି ଭଳି ମହାକାବ୍ୟ (Epic) ସୃଷ୍ଟି ହେବା ସମ୍ଭବ କି ? ଏ ପ୍ରସଙ୍ଗରେ ବହୁ ସମାଲୋଚକ ନୈରାଶ୍ୟ ଜନକ ଉତ୍ତର ଦେଇଥାନ୍ତି । ମାତ୍ର ଶ୍ରୀ ଅରବିନ୍ଦ ତାଙ୍କର "Form and Spirit" ପ୍ରବନ୍ଧରେ କହନ୍ତି—ଭବିଷ୍ୟତରେ ମହାକାବ୍ୟ (Epic) ସମ୍ଭବ ହେବ । ଅବଶ୍ୟ ସେଥିରେ ସେହି ଆଦିମ ସରଳ ମନର ସରଳ ବିଶ୍ୱାସ ପୂର୍ଣ୍ଣ କାହାଣୀ—ଯଥା ମନୁଷ୍ୟ, ରାଜା, ରାଜ୍ୟ ଓ ଦେବତା ରାକ୍ଷସାଦିଙ୍କ ସମ୍ପର୍କରେ ବାହ୍ୟ ଘଟଣାଗୁଡ଼ିକର ଘନଘଟା ଆଉ ରହିବ ନାହିଁ । ମାତ୍ର ଭବିଷ୍ୟତର ମହାକାବ୍ୟରେ ମନୁଷ୍ୟର ଓ ତାର ଶତାବ୍ଦୀର ଆପଣା ଦୁର୍ଭାଗ୍ୟ (Destiny) ସଙ୍ଗେ ଲଢ଼ିବାର—ନିଜର ମାନବୀୟ ସତ୍ତାର ସୀମାକୁ ଅତିକ୍ରମ କରି ଉଚ୍ଚତର ଚେତନାର ସ୍ତରମାନଙ୍କୁ ଆରୋହଣ କରିବାର ଦୁଃସାହସିକ ଅଭିଯାନଗୁଡ଼ିକର ମହାନ ଅଭିଜ୍ଞତାମାନ ଲିପିବଦ୍ଧ ହୋଇ ମନୁଷ୍ୟର କ୍ରମ ଉଦ୍‌ବର୍ତ୍ତନରେ ପ୍ରେରଣା ଯୋଗାଇବ । ସାମାଜିକ ସଂଗଠନ ଓ ବିକାଶରେ ବ୍ୟକ୍ତି-ମନୀଷିମାନଙ୍କର ଆତ୍ମଦାନର କାହାଣୀରେ ଭବିଷ୍ୟତର ମହାକାବ୍ୟ ସମୃଦ୍ଧ ହୋଇ ଉଠିବ । ପୁଣି ସେହି ସବୁ ଦିବ୍ୟଦ୍ରଷ୍ଟା ଅବତାର ପୁରୁଷ ଓ ମହାନ ବିଭୂତି-ସମ୍ପନ୍ନ ମହାପୁରୁଷମାନଙ୍କର ଦିବ୍ୟ ଦର୍ଶନର ଅଭିଜ୍ଞତାମାନ ମଧ୍ୟ ସେଥିରେ ରସସ୍ୱରୂପତା ଲାଭ କରି ସର୍ବସାଧାରଣଙ୍କୁ ଋଷି କବିର ଦିବ୍ୟାନୁଭୂତିକୁ ଅନୁଭବ କରିବାରେ ସାହାଯ୍ୟ କରିବ । କିନ୍ତୁ ଏହିସବୁ ମହାକାବ୍ୟର ବିଷୟ ଉଚ୍ଚାରିତ ହେବ "from some profound and mighty voice of the future. (ସେହି ମହାନ ଋଷି କବି ବା ଦିବ୍ୟଦ୍ରଷ୍ଟା କବିଙ୍କର) indeed may be the song of greatest fight that will reveal from the highest pinnacle and with the largest field of vision

the destiny of the human spirit and the presence and ways and purpose of the Divinity in man and the universe.

ଭବିଷ୍ୟତର ମହାକାବ୍ୟ ସମ୍ପର୍କରେ ଶ୍ରୀ ଅରବିନ୍ଦଙ୍କର ଏହି ଉକ୍ତିଟିକୁ ସମର୍ଥନ କରାଯାଇପାରେ—ତାଙ୍କର ମହାନ୍ ସୃଷ୍ଟି 'ସାବିତ୍ରୀ' ମହାକାବ୍ୟଟିକୁ ଅନୁଶୀଳନ କରିବା ପରେ । ପ୍ରକୃତରେ "ସାବିତ୍ରୀ"ରେ ଏପରି ନିଗୂଢ଼ ପାର୍ଥିବ ଓ ଅପାର୍ଥିବ ଜଗତର ଉପଲବ୍ଧିମାନ ଅଭିବ୍ୟକ୍ତ ହୋଇଛି—ଯାହାକି ଅତୀତର ସମସ୍ତ ବିଶ୍ୱ ମହାକାବ୍ୟମାନଙ୍କରେ କୁତ୍ରାପି ପ୍ରକାଶ ପାଇନାହିଁ । "ସାବିତ୍ରୀ"ରେହିଁ ଭବିଷ୍ୟତ-କାବ୍ୟ ଚେତନାର ମୂଳରସ ଓ ମୂଳ ପ୍ରେରଣା ନିହିତ ଅଛି । ଅତିମାନସ-ଚେତନା ପରିଚାଳିତ ଭବିଷ୍ୟତର ମାନବ ସମାଜ ଲାଗି "ସାବିତ୍ରୀ" ହିଁ ପରିଗଣିତ ହେବ ପ୍ରଥମ ମହାକାବ୍ୟ ରୂପେ ଓ ଶ୍ରୀ ଅରବିନ୍ଦ ହିଁ ହେବେ ସେହି ମହାକାବ୍ୟର ଆଦିକବି ।

ପ୍ରଥମ କରି ଶ୍ରୀ ଅରବିନ୍ଦ ହିଁ ସାବିତ୍ରୀ ମହାକାବ୍ୟରେ ଯୁଗ ଯୁଗ ଧରି ମନୁଷ୍ୟ ସ୍କନ୍ଧରେ ତାର ଇଚ୍ଛା ବିରୁଦ୍ଧରେ ଲଦି ଦେଇଥିବା ଦୁଃଖବାଦ ଭାଗ୍ୟ କର୍ତ୍ତୃତ୍ୱ ଓ ମୃତ୍ୟୁର ଅଧିକାରକୁ ଅସ୍ୱୀକାର କରିଅଛନ୍ତି । ଅତିମାନସ ଶକ୍ତି ଓ ଚେତନାର ମୂର୍ତ୍ତି-ମତୀ ବିଗ୍ରହ "ସାବିତ୍ରୀ" ହିଁ ତାଙ୍କର ଦିବ୍ୟ ପ୍ରେମର ସଂକଳ୍ପ ବଳରେ ମୃତ୍ୟୁକୁ ପରାଭୂତ କରିଛନ୍ତି ଓ ମନୁଷ୍ୟର ଆଧିଭୌତିକ, ଆଧିଦୈବିକ ଓ ଆଧ୍ୟାତ୍ମିକ ଦୁଃଖ ଯନ୍ତ୍ରଣାର ବୋଝକୁ ମନୁଷ୍ୟର କାନ୍ଧରୁ ଚିରଦିନ ଲାଗି ଖସାଇ ଦେଇଛନ୍ତି । ମାତ୍ର ଏତିକି କରିବା ଲାଗି ପ୍ରେମ, ସଂକଳ୍ପ ଓ ତପସ୍ୟାର ଯେଉଁ ସବୁ ସ୍ତରମାନଙ୍କୁ ସାବିତ୍ରୀ ଓ ଅଶ୍ୱପତିଙ୍କୁ ଅତିଯାନ କରିବାକୁ ହୋଇଛି—ତାହା ମନୁଷ୍ୟ ଲାଗି ଓ ତାର ସାହିତ୍ୟର ବିଷୟ ଲାଗି ସମ୍ପୂର୍ଣ୍ଣ ଭାବେ ବିଶାଳ ଏକ ନୂତନ ଅଭିଜ୍ଞତା ।

ଅତଃପର ବିଶ୍ୱସାହିତ୍ୟ ସଙ୍ଗେ ଭାରତୀୟ ଓଡ଼ିଆ ସାହିତ୍ୟ ଯେ ଭବିଷ୍ୟତରେ ଅଭ୍ୟୁଦୟର ଆଉ ଏକ ନୂତନ ଦିଗ୍‌ବଳୟ ଆଡ଼କୁ ମୁହାଁଇ ଯିବ ଏବଂ ସେହି ଅଗ୍ରସର କାଳରେ ତାହା ଆପଣାର ରୂପ, ଗୁଣ ଓ ଆକାର ନିଜେ ନିଜେ ଗଠନ କରି ନେଇ-ପାରିବ—ଏଥିରେ ଆଉ ସନ୍ଦେହ କରିବାର କିଛି ନାହିଁ । ତେଣୁ ବର୍ତ୍ତମାନ ଅବକ୍ଷୟ-ମାଣ ସାହିତ୍ୟ କୃତିକୁ ଦେଖି ଓଡ଼ିଆ ସାହିତ୍ୟ ବା ଭାରତୀୟ ସାହିତ୍ୟର ଭବିଷ୍ୟତକୁ ଅନ୍ଧ ଦିଗନ୍ତ ବୋଲି କହିହେବ ନାହିଁ । କାରଣ ସମଗ୍ର ବିଶ୍ୱସାହିତ୍ୟର ଆଜି ସେହି ଦଶା ଓ ସେହି ଦୁର୍ଦ୍ଦଶାରୁ ମୁକ୍ତି ପାଇବା ଲାଗି ସମାନ ବ୍ୟାକୁଳତା ଓ ସମସ୍ତଙ୍କ ଲାଗି ଭବିଷ୍ୟତର ସାହିତ୍ୟ ଦିଗ୍‌ବଳୟରେ ନବୀନ ଉଷାର ଆଗମନୀ ତାର ଆଖି ଓ କାକଳି

ଭିତରେ ପ୍ରତିଭାତ ହୋଇ ଉଠିଲାଣି । ସବୁ ଦେଶରେ ମନୁଷ୍ୟ ଚେତନାରେ ଏହି ଅତିମାନସ ଅଭିଜ୍ଞତା, ପ୍ରଜ୍ଞା, ଅନୁଭୂତି ଓ ସଂକଳ୍ପର ଉଷା ପ୍ରତିଭାତ ହେଲାଣି । ଶ୍ରୀ ଅରବିନ୍ଦ ଶେଷରେ କହନ୍ତି—"The nations that must include and make real these things in their life and the nations of the coming dawn and the poets of whatever tongue and race who must completely see with this vision and speak with the inspiration of its utterence are those who shall be the creators of the poetry ( Literature ) of the future."

ଶେଷରେ ଏତିକି ଆଶ୍ୱାସନାମୂଳକ କଥା କୁହାଯାଇପାରେ ଯେ ଭବିଷ୍ୟତର ଉଜ୍ଜ୍ୱଳତମ ଶତାବ୍ଦୀମାନଙ୍କୁ ଜନ୍ମ ଦେବାଲାଗି ଆମର ଏହି ବିଂଶ ଶତାବ୍ଦୀର ଯେଉଁ ଉତ୍କଟ ଗର୍ଭଯନ୍ତ୍ରଣାର ଚିତ୍କାର ଆମେ ଅନବରତ ଶୁଣୁଅଛୁ ସେହି ଯନ୍ତ୍ରଣା କାତର ଓ ଯନ୍ତ୍ରଣାକ୍ଷିପ୍ତ ଚିତ୍କାର ଭିତରେ ବି ଆମେ ଏହି ଶତାବ୍ଦୀରେ ଟଲଷ୍ଟୟ, ରୋମାରୋଲାଁ, ରବୀନ୍ଦ୍ରନାଥ, ବାର୍ଣ୍ଣାଡ଼ ସ, ମାକ୍‌ସିମ୍ ଗର୍କୀ, ଡଷ୍ଟୋଭସ୍କି, ଡ଼ି. ଏଚ. ଲରେନସ୍, ହୁଇଟ୍‌ମାନ, କାରପେଣ୍ଟର, ଇଟ୍‌ସ୍, ଏ.ଇ.ଓ ମରଡ଼ିଥ୍ ପ୍ରମୁଖ ମହାନ କବି ଓ ଲେଖକମାନଙ୍କର ଆଶା-ବାଣୀ ଓ ସାନ୍ତ୍ୱନା-ବାଣୀ ଶୁଣିଅଛୁ । ସେ ଦୃଷ୍ଟିରୁ ଆମର ଏହି ବିଂଶଶତାବ୍ଦୀଟି ହିଁ ସବୁ ଦିଗରୁ ଏକ ମହାନ୍ ପ୍ରସ୍ତୁତି ଏବଂ ଏକ ମହାନ ପ୍ରତିଶ୍ରୁତିର କାଳରୂପେ ମହାକାଳ ବକ୍ଷରେ ଯଶସ୍ୱୀ ହୋଇ ରହିଥିବ ।



( ଶ୍ରୀ ଅରବିନ୍ଦଙ୍କ ଲିଖିତ "Future Poetry" ଗ୍ରନ୍ଥର ଭିତ୍ତିରେ ଲିଖିତ )

ମୁଦ୍ରାକର—ଶ୍ରୀ ରଘୁନାଥ ପ୍ରସାଦ ମିଶ୍ର, ପ୍ରସାଦ ପ୍ରେସ, କଟକ-୨